# କବି ନୀଳକଂଠ

**ଶ୍ରୀ କ୍ଷେତ୍ରବାସୀ ନାୟକ**

ଅଧ୍ୟାପକ, ଓଡ଼ିଆ ବିଭାଗ

ଖଲ୍ଲିକୋଟ କଲେଜ, ବ୍ରହ୍ମପୁର

ନ୍ୟୁ ବୁକ୍ ଷ୍ଟୋର

ବ୍ରହ୍ମପୁର-୧

# କବି ନୀଳକଂଠ

ଅଧ୍ୟାପକ **କ୍ଷେତ୍ରବାସୀ ନାୟକ**
ଖଲ୍ଲିକୋଟ କଲେଜ, ବ୍ରହ୍ମପୁର ।

ପ୍ରକାଶକ
**ଶ୍ରୀ ଭାସ୍କର ଚନ୍ଦ୍ର ପାତ୍ର**
ବିଜୟ ବୁକ୍ ଷ୍ଟୋର
ବ୍ରହ୍ମପୁର ।
ସଂପାଦନା
**ସମୀକ୍ଷା ସଂସଦ, ବ୍ରହ୍ମପୁର**
ମୂଲ୍ୟ : ବନ୍ଧା—ଟ ୪-୫୦
ଅବନ୍ଧା—ଟ ୩-୫୦

# KAVI NILAKANTHA

A Monograph on NILAKANTHA :
An Oriya Poet.

*By*
**Sri Kshetrabasi Nayak**
*Lecturer*,
Dept. of Oriya
Khallikote College
Berhampur.

*Publisher*
**Sri Bhaskar Chandra Patro**
**Bijoy Book Store**
Berhampur.
*Edited By*
**Samiksha Sansad**
Berhampur.
*Price* :
Ordinary Rs. 3-50
Delux Rs. 4-50

ଜଗନ୍ମାତା ଶକ୍ତିରୂପିଣୀ ପ୍ରଜ୍ଞାଦେବୀ
ଶ୍ରୀ ଶ୍ରୀ ଶ୍ରୀ ଦୁର୍ଗାଙ୍କର ପାଦପଦ୍ମରେ
ଭକ୍ତିପୂତ ନୈବେଦନ ସ୍ୱରୂପ
ଏହି ଗ୍ରଂଥ ଅର୍ପିତ ହେଲା ।

। କ୍ଷେତ୍ରବାସୀ ।




ବିଂଶ ଶତାବ୍ଦୀର ଚତୁର୍ଥ ଦଶକ ଠାରୁ ଏ ଯାବତ୍ ଆମ ସମାଲୋଚନା ସାହିତ୍ୟ ନିଷ୍ଠାପର ଭାବେ କୌଣସି ନିର୍ଦ୍ଦିଷ୍ଟ ଯୋଜନା-ବଦ୍ଧ ଧାରାର ଅନୁଗାମୀ ହୋଇଛି ବୋଲି କହି ହେବ ନାହିଁ । ଖୁବ୍ କ୍ୱଚିତ୍ କ୍ଷେତ୍ରରେ ବିଧିବଦ୍ଧ ଭାବେ ଏକକ ବିଷୟ-ଭିତ୍ତିକ ଆଲୋଚନା ଗ୍ରଂଥ ପ୍ରକାଶ ପାଇଛି । ଆମର ସମୀକ୍ଷା-ସଂପଦ ଏପରି ଯେ, ଆଗ୍ରହୀ ଅଧ୍ୟାୟୀମାନେ ଜଣେ କବି, ସାହିତ୍ୟିକ ବା ସାହିତ୍ୟର କୌଣସି ବିଭବକୁ ଯଥାର୍ଥଭାବେ ଜାଣିବାକୁ

ଗୃହିବାବେଳେ ଏକାଧିକ ରେଫେରେନ୍ସ ପୁସ୍ତକ ଉପରେ ନିର୍ଭର କରିବାକୁ ବାଧ୍ୟ ହେଉଛନ୍ତି । କାରଣ ପ୍ରକାଶିତ ବହୁ ସମାଲୋଚନା ଗ୍ରଂଥରେ ବିଷୟ-ସଜ୍ଜା ଇତଃସ୍ତତ । ତେଣୁ ସାଧାରଣ ଅନୁସନ୍ଧିତ୍ସୁ ଚତୁର୍ଦ୍ଦିଗ ବୁଲି କୌଣସି ବିଷୟରେ ପ୍ରାଥମିକ ତଥ୍ୟ ଜାଣିବାକୁ ଚାହୁଁ ନାହାଁ କିଂବା ସେଥିକି ତାର ଧୈର୍ଯ୍ୟ ସହୁ ନାହିଁ । ପରିକଳ୍ପନା-ଗତ ତ୍ରୁଟି ଏଥିପାଇଁ ଦାୟୀ । ବହୁ ସାହିତ୍ୟ-ପୁରୁଷ ଏବଂ ସାହିତ୍ୟିକ ବିଭବ ଏବେ ବି ଅନାଲୋଚିତ ହୋଇ ରହିଛନ୍ତି ।

ଉଚ୍ଚକାଂକ୍ଷୀ ହେଲେ ବି, ମନନଶୀଳ ଓ ବିଶ୍ଳେଷଣାତ୍ମକ ଦୃଷ୍ଟିଭଂଗୀର ଅଭାବ ହେତୁ ଏବଂ ସ୍ଥୂଳ କଳେବରବିଶିଷ୍ଟ ହୋଇ ସମୀକ୍ଷା ଗ୍ରନ୍ଥଗୁଡ଼ିକ ଅଯଥା ଦୁର୍ମୂଲ୍ୟ ହୋଇ ପଡ଼ୁଥିବାରୁ ତରୁଣ ପ୍ରଜ୍ଞାପ୍ରେମୀଙ୍କ ଲାଗି ଏହା ସହଜ ଲଭ୍ୟ ହୋଇ ପାରୁନାହିଁ । ଫଳତଃ ଆଗାମୀ ବଂଶଧରମାନଙ୍କ ମନରେ ଉତ୍କୃଷ୍ଟ ସମୀକ୍ଷଣ-ଚେତନା ଜାଗରଣରେ ଆମ ସମାଲୋଚନା ସାହିତ୍ୟ ଅସମର୍ଥ ହୋଇ ପଡ଼ୁଛି ।

ଏଥିପ୍ରତି ସଚେତନ ହୋଇ ସମାଲୋଚନା ସାହିତ୍ୟ ପାଇଁ ଏକ ପ୍ରଶସ୍ତ କ୍ଷେତ୍ର ପ୍ରସ୍ତୁତ କରିବା ଆଶାରେ ସମୀକ୍ଷା ସଂସଦ ଜନ୍ମ ନେଇଛି । ଏହାର ପ୍ରଥମ (୧୬-୧-୧୯୭୨) ଓ ପରବର୍ତ୍ତୀ ଅଧିବେଶନଗୁଡ଼ିକ ଅଧ୍ୟାପକ ଶ୍ରୀ ନାୟକଙ୍କର ବାସଭବନରେ ଅନୁଷ୍ଠିତ ହୋଇ ଏ ସଂକ୍ରାନ୍ତୀୟ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଛି । ଏହି କାର୍ଯ୍ୟକ୍ରମ ଅନୁଯାୟୀ ଓଡ଼ିଆ କାବ୍ୟ ସାହିତ୍ୟ, କଥା ସାହିତ୍ୟ ନିବନ୍ଧ ସାହିତ୍ୟ ଏବଂ ସାହିତ୍ୟ-ସାଧକଙ୍କ ଉପରେ କ୍ରମାନ୍ୱୟରେ ଉତ୍କୃଷ୍ଟ ମନୋଗ୍ରାଫ୍ ପ୍ରକାଶ ପାଇବ ।

'କବି ନୀଳକଂଠ' ପରେ 'ଔପନ୍ୟାସିକ ଗୋପୀନାଥ' 'କବି ଅଭିମନ୍ୟୁ' 'ଗାଳ୍ପିକ ଫକୀରମୋହନ' ଏବଂ 'ଚର୍ଯ୍ୟାପଦର ଭାଷା' ଇତ୍ୟାଦି ଶିରୋନାମାରେ ଅନ୍ୟ ଗ୍ରଂଥଚୟ ମୁଦ୍ରଣ ମଂଚରୁ ପ୍ରକାଶ ଆଲୋକର ଅପେକ୍ଷା ରଖିଛନ୍ତି ।

ସଂସଦର ସଂପାଦନା ବିଭାଗ ଏହି ଯୋଜନାଟିକୁ କାର୍ଯ୍ୟକାରୀ କରୁଛନ୍ତି । ଏକାଂତ ଭାବେ, **Critic work shop** ର ପ୍ରାଣ ଶକ୍ତି ଯେଉଁ ଯୌଥ ଉଦ୍ୟମରେ ଏହି ପରିକଳ୍ପନାଟି ହାତକୁ ନିଆ ଯାଇଛି ଏବଂ ବ୍ରହ୍ମପୁରର ଉତ୍ସାହୀ ପ୍ରକାଶନ ପ୍ରତିଷ୍ଠାନ ବିଜୟ ବୁକ୍ ଷ୍ଟୋର, ଏହି ଅଭିନବ ଉଦ୍ୟମର ପ୍ରସାର ଦାୟିତ୍ୱ ବହନ କରିଛନ୍ତି ।

ଆମେ ବିଶ୍ୱାସ କରୁଛୁ, ଆମର ଏଇ ନୂତନ ଯୋଜନାଟିର ଶୁଭଫଳ ଅଧ୍ୟାୟୀ, ଅଧ୍ୟାପକ, ଗବେଷକ ଓ ଅନୁଷ୍ଠାନମାନେ ଭୋଗ କରି, ଉପକୃତ ହେବେ । ଚରୈବେତି ! ଚରୈବେତି !

ବ୍ରହ୍ମପୁର
୧୫, ମେ ୧୯୭୧



ସମୀକ୍ଷା ସଂସଦ

# ସଂଳାପ

ମୋର ଏହି ଗ୍ରଂଥ, ସ୍ୱପରିକଳ୍ପିତ ଗୋଟିଏ ବୃହତ୍ତର ଯୋଜନାର ପ୍ରଥମ ମନୋଗ୍ରାଫ୍ । ସମୀକ୍ଷା ସଂସଦ ଏହି ପରିକଳ୍ପନାଟିର ପ୍ରସୂତି-ଗୃହ ।

ସତ୍ୟବାଦୀ କବି-କୁଳଙ୍କ ମଧ୍ୟରୁ ଜଣେ ଦୁଇଜଣଙ୍କର କବିକୃତି ସଂପର୍କରେ ଅତୀତରେ ଆଲୋଚନା ହୋଇଛି । କିଂତୁ ସେହି କାବ୍ୟ-ସ୍କୁଲର ଅନ୍ୟତମ କବି-କର୍ମ-ସାଧକ ପଣ୍ଡିତ ନୀଳକଂଠଙ୍କୁ ନେଇ ଏକକ କାବ୍ୟ-ଚର୍ଚ୍ଚାର ଅଭାବ ଥିଲା । ଏବେ ତାହା ଦୂର ହେଲା ଏବଂ ଏହା ଦ୍ୱାରା ସତ୍ୟ-ବାଦୀ କାବ୍ୟ-ସ୍କୁଲର ପୂର୍ଣ୍ଣାଂଗ ଅଧ୍ୟୟନ ପାଇ ଅନୁସନ୍ଧିତ୍ସୁମାନେ ପ୍ରାଥମିକ ଅସୁବିଧାର ସମ୍ମୁଖୀନ ହେବେ ନାହିଁ ।

ସମୀକ୍ଷା ସଂସଦର ବନ୍ଧୁଗଣଙ୍କର ସାଧୁ ପରାମର୍ଶ ଓ ସହଯୋଗିତା ଏବଂ ପ୍ରକାଶକ ବନ୍ଧୁ ଶ୍ରୀ ଭାସ୍କର ଚନ୍ଦ୍ର ଦାସଙ୍କ ସକ୍ରିୟ ସମର୍ଥନ ଏହି ପରିକଳ୍ପନାଟିକୁ ରୂପାନ୍ୱିତ କରିଛି । ସେଥିପାଇଁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ । ଶିଳ୍ପୀବନ୍ଧୁ ଶ୍ରୀ ରାଧାକାଂତ ମହାପାତ୍ର ଗ୍ରଂଥଟିର ପ୍ରଚ୍ଛଦ ଅଂକନରେ ଆନ୍ତରିକ ଯତ୍ନ କରିଛନ୍ତି; ତାଙ୍କୁ ଏହି ଅବସରରେ ସାଧୁବାଦ ଜଣାଉଛି ।

ଯେଉଁମାନଙ୍କ ପାଇଁ ମୋର ଏଇ ସର୍ଜନଶୀଳ ଯନ୍ତ୍ରଣା, ସେମାନେ ତହିଁର ଅମୃତ ଫଳ ଭୋଗ କଲେ ମୁଁ ଖୁସୀ ହେବି । ଇତି ।

ସାରସ୍ୱତ ନିଳୟ
ବ୍ରହ୍ମପୁର
ଅକ୍ଷୟ ତୃତୀୟା, ୧୯୭୨

କ୍ଷେତ୍ରବାସୀ ନାୟକ

# କବି ନୀଳକଣ୍ଠ

୧୮୮୪ - ୧୯୬୭

ନୀଳକଣ୍ଠ ଜଣେ ସଂସ୍କୃତି ପ୍ରାଣ କବି । ପ୍ରଜ୍ଞା ଓ ପ୍ରତିଭାର ଏକ ମୂର୍ତ୍ତିମାନ ପ୍ରତୀକ । ଅନୁଭୂତିର ଏକ ନିର୍ଝର ଓ ବିଦ୍‌ବତ୍ତାର ଏକ ସମୁଦ୍ର । କଳ୍ପନା ଅପେକ୍ଷା ପ୍ରଜ୍ଞା, ସ୍ୱପ୍ନ ଅପେକ୍ଷା ସହଜ ବାସ୍ତବତାର ମୂଲ୍ୟ ତାଙ୍କଠାରେ ବେଶୀ । ଜୀବନର ଆୟତଭୂମିରେ ମୃଣ୍ମୟ ଅନୁଭୂତିର ଲିପିକାର ହେବା ଅପେକ୍ଷା ଜାତିର ଆତ୍ମିକ ବିଭବକୁ ଠିକନଖି ସଂଗ୍ରହ କରି ତାକୁ ଅନାଗତର ପାଥେୟ ବୋଲି ବିବେଚନା କରିବାରେ ନୀଳକଣ୍ଠଙ୍କ କବିମନ ବିଶେଷ ତତ୍ପର ଥିଲା ।

ତାଙ୍କ ପାଇଁ ଜୀବନ କିଛି ଚପଳଛନ୍ଦ ନୁହେଁ; ଉଲଙ୍ଗ ଝରଣାର ଉଚ୍ଛଳ ଉଚ୍ଚାରଣ ନୁହେଁ ବରଂ ପ୍ରବୀଣତାର ଆଧିପତ୍ୟରେ ତାହା ସତେ ଯେପରି ଜ୍ଞାନ ଗରିଷ୍ଠ । କବିର ଆଖି ନେଇ ସେ ଜୀବନର ଦ୍ରଷ୍ଟା ହୋଇ ପାରିନାହାନ୍ତି; ଗୁରୁର ମନ ନେଇ ଜୀବନର ନିର୍ମାତା ରୂପେ କିଂବା ଜାତିର ଆଚାର୍ଯ୍ୟ ପରି ଏ ମାଟିର ନିହିତ ସ୍ୱରକୁ ପ୍ରାଣେ ପ୍ରାଣେ ଫୁଟାଇବାରେ ତାଙ୍କର

କବି ମନ ଅବାଧ ଉଦ୍ୟମ କରିଛି । ଦାର୍ଶନିକତାର ଗହନ ଅନ୍ତରେ ସେ ଆଶ୍ରୟ ନେଇଛନ୍ତି । ସେଠି ପାଇଛନ୍ତି ଶାଳୀନତାର କିଛି ରତ୍ନ ଓ ଖିଡ଼୍ରା ଏବଂ ସୁରୁଚିର କିଛି କନକ ଶସ୍ୟ । ତାଙ୍କ କାବ୍ୟ-ସ୍ୱର ଲଳିତ କବି ହୃଦୟର ଇଲାକାରେ ସଂଚରିତ ଉଚ୍ଛୁଳା ଉଚ୍ଛ୍ୱାସର ଏକ ଉଚ୍ଚାରଣ ବୋଲି ଅନୁଭବ କରି ହୁଏନା । ତେଣୁ ନୀଳକଣ୍ଠ ଲଳିତ କବି ହୋଇପାରି ନାହାନ୍ତି କିଂବା ସ୍ୱପ୍ନିଳ ଭାବୁକତାର ନୀଳହ୍ରଦ ଭିତରେ ଆତ୍ମାକୁ ଖୋଜିବାର କାବ୍ୟିକ ଇଚ୍ଛା ମଧ୍ୟ ପୋଷଣ କରି ନାହାନ୍ତି ।

କବିତା ପାଇଁ ପ୍ରାଜ୍ଞ ନୀଳକଂଠ ଜୀବନରେ ଖୁବ୍ କମ ସମୟ ବ୍ୟୟ କରିଛନ୍ତି । ମୌଳିକ କବିତା ରଚନା ଓ ଅନୁବାଦ ଲାଗି ତାଙ୍କୁ ପ୍ରାୟ ଦୁଇ ମାସ ସମୟ ଲାଗିଥିବ । ଏ ପ୍ରସଂଗରେ ଡ଼ଃ କୃଷ୍ଣଚରଣ ଦାଶଙ୍କର ଅନୁମାନ ଅସତ୍ୟ ନୁହେ ।[୧]

ନୀଳକଣ୍ଠ ଆପଣା ସୃଷ୍ଟି-ଶକ୍ତିର ଜଣେ ନିର୍ଭୁଲ ପରୀକ୍ଷକ । ବିପୁଳାଚ ତାଙ୍କ ସୃଷ୍ଟି, ତଥାପି ସେ 'ଆତ୍ମଦୈନ୍ୟବୋଧରୁ ମୁକ୍ତ ହୋଇପାରି ନାହାନ୍ତି ।' ବରଂ ତାଙ୍କର ଏଇ ସ୍ୱୀକାରୋକ୍ତି ତାଙ୍କୁ

୧ । ନୀଳକଣ୍ଠ ପରିକ୍ରମା—ପୃ ୯, ପୂଜ୍ୟପୂଜା ସଂସଦ ୧୯୬୯ ।

୨ । "ମୋର ଏବେ ମଧ୍ୟ ନିଜ ଲେଖାରେ ଆତ୍ମଦୈନ୍ୟର ଭାବ ବରାବର ଯାଇ ନାହିଁ । ଏବେ ବି କିଛି ଲେଖିଲେ ଯାହାକୁ ହେଲେ ଶୁଣାଇ ଭଲ ଅନୁମୋଦନ ନ' ପାଇଲେ ମୁଁ ପ୍ରାୟ ସାହସ କରି ପ୍ରକାଶ କରେ ନାହିଁ । କେହି କୌଣସି ଅଂଶ ଆଚ୍ଛା ଲାଗୁନାହିଁ ବୋଲି କହିଲେ ତତ୍‌କ୍ଷଣାତ୍ ବଦଳାଇ ଦିଏ ଓ ପୁଣି ଶୁଣାଏ । କାରଣ ମୋର ଗୋଟିଏ ଧାରଣା ପଡ଼ିଯାଇଛି ମୁଁ ମୋ ପାଇଁ ଲେଖୁନାହିଁ । ଅନ୍ୟ ପଢ଼ି ବୁଝିବା ଓ ଗ୍ରହଣ କରିବା ପାଇଁ ଲେଖୁଛି ।"
ଆତ୍ମ ଜୀବନୀ—ନୀଳକଣ୍ଠ ଗ୍ରନ୍ଥାବଳୀ—ପୃ ୩୬-୩୭

ଅଧିକ ସ୍ପଷ୍ଟ ଓ ତାଙ୍କ ସାରସ୍ୱତ ସାଧନାର ଉଦ୍ଦେଶ୍ୟକୁ ନିର୍ଦ୍ଦିଷ୍ଟ କରିଛି । ଏଥିରୁ ମଧ୍ୟ ସୂଚିତ ଯେ ସେ ବ୍ୟକ୍ତି ଭୂମିରେ ସ୍ମରଣ କରି 'କବି ହେବାକୁ ଇଚ୍ଛୁକ ନୁହନ୍ତି । ତାଙ୍କ ସୃଷ୍ଟି ତାଙ୍କ ପାଇଁ ନୁହେଁ, ଅନ୍ୟମାନଙ୍କ ପାଇଁ । ସେମାନଙ୍କର ଗ୍ରାହକତାରେ କବିର ସ୍ୱର୍ଗ ସୁଖ ।'[୩] ତେଣୁ ତାଙ୍କ ଲେଖନୀ ସହୃଦୟ ଅନୁଗାମୀ ହେବାପାଇଁ ବିଶେଷ ତତ୍ପର । ତଥାପି ନୀଳକଣ୍ଠ ଏ ଦେଶରେ କଷ୍ଟ ବୋଧେ; ଇଂରେଜ ଲେଖକଙ୍କ ମିଲଟନ ପରି । ଅପରିମେୟ ମନୀଷା ଏହାର ଅନ୍ୟତମ କାରଣ ହୋଇପାରେ ।

## କବି ଜୀବନର ଅଭ୍ୟୁଦୟ : ପ୍ରଥମ କବିତା

ମନନଶୀଳତାରୁ ନୀଳକଣ୍ଠଙ୍କ ସାରସ୍ୱତ ଜୀବନର ଉନ୍ମେଷ । ପ୍ରବନ୍ଧ ରଚନାରୁ ଏହାର ଆରମ୍ଭ; କାବ୍ୟ-କବିତାର ରସ ବଳୟରେ ଏହାର ପରିପାଳନ । ପୁନଶ୍ଚ ପ୍ରବନ୍ଧ ଓ ସମାଲୋଚନାରେ ଏହାର ପ୍ରଶସ୍ତ ପରିପୁଷ୍ଟି । ଅର୍ଥାତ୍ ପ୍ରାବନ୍ଧିକରୁ କବି, କବିରୁ ପ୍ରାବନ୍ଧିକ ତଥା ଗବେଷକ—ଏହାହିଁ ନୀଳକଣ୍ଠଙ୍କ ସାଧକ ଜୀବନର ଉଦ୍ବର୍ତ୍ତନ । ସାମନ୍ତ ଚନ୍ଦ୍ରଶେଖରଙ୍କ ଉପରେ ଲିଖିତ ଏକ ଜୀବନୀ ମୂଳକ ପ୍ରବନ୍ଧ ହେଉଛି ନୀଳକଣ୍ଠଙ୍କର ପ୍ରଥମ ପ୍ରକାଶିତ ଲେଖା । ୧୯୦୪ ବେଳକୁ ସ୍ୱର୍ଗତଃ ସାମନ୍ତଙ୍କ ଦଶାହ ଉପଲକ୍ଷେ ଏହା ରଚିତ ହୋଇ ଦୁଇ ବର୍ଷ ପରେ ଉତ୍କଳ ସାହିତ୍ୟରେ ପ୍ରକାଶ

---

୩ । ଗ୍ରାହକତା ବିନା କବି ସ୍ୱର୍ଗ ସୁଖ
ଆନ ମୂଲେ କବି ତୋଷଇ କେହି ?
କୋଣାର୍କେ—ନୀଳକଣ୍ଠ ଗ୍ରନ୍ଥାବଳୀ
ପୃ ୩୭୨—୧୯୬୩ ସଂସ୍କରଣ ।

ପାଇଥିଲି ।[୪] ସତ୍ୟବାଦୀ ସ୍କୁଲରେ ଯୋଗଦେବା ପର୍ଯ୍ୟନ୍ତ ତାଙ୍କ କାବ୍ୟ-ଜୀବନର ସୂତ୍ରପାତ ହୋଇ ନ ଥିଲା । ସ୍କୁଲ ଆରମ୍ଭ କରିବାର ଅଳ୍ପ ଦିନ ପରେ ସମ୍ଭବତଃ ୧୯୧୨ କିଂବା ୧୯୧୩ ଖ୍ରୀଷ୍ଟାବ୍ଦ ସ୍କୁଲର ଶ୍ରୀପଞ୍ଚମୀ ଉତ୍ସବରେ ଛାତ୍ରମାନଙ୍କର ଆବୃତ୍ତି ନିମନ୍ତେ ଦରକାର ହେବାରୁ "ଭକ୍ତର ଉଦ୍‌ବୋଧନ" ବୋଲି ଗୋଟିଏ କବିତା ସେ ଲେଖିଥିଲେ ।[୫] ତାହା କିଛି ଦିନ ପରେ 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଇଲା ଏବଂ ପରେ 'ଭକ୍ତ ବାଣୀ' ନାମ ନେଇ ଏହା ଗ୍ରନ୍ଥାବଳୀ ୧ମ ଭାଗର ଭକ୍ତଗାଥା ଅଂଶରେ ସଂଯୋଜିତ ହୋଇଛି । ଏତଦ୍‌ଭିନ୍ନ ସେତେବେଳେ କବି-ଜୀବନର ପ୍ରାଥମିକ ପର୍ଯ୍ୟାୟରେ ସେ ସତ୍ୟବାଦୀ ବିଦ୍ୟାଳୟର ଦୈନିକ ଉପାସନା ପାଇଁ ମଧ୍ୟ କେତେକ ବୈଦିକ ଓ ଶାସ୍ତ୍ରୀୟ ମନ୍ତ୍ର ବା ସ୍ତୋତ୍ର ସଂଗ୍ରହ କରି ଅନୁବାଦ କରିଥିଲେ । ତାହା ପ୍ରଥମେ 'ଉତ୍କଳ ସାହିତ୍ୟ ଓ ପରେ 'ଉପାସନା' ନାମକ ଗୋଟିଏ କ୍ଷୁଦ୍ର ପୁସ୍ତିକାରେ ଆତ୍ମ ପ୍ରକାଶ କରିଥିଲା ।[୬]

ଏ ଗୁଡ଼ିକ କବିଙ୍କର ଗ୍ରନ୍ଥାବଳୀରେ ସ୍ଥାନ ପାଇଛନ୍ତି ଏବଂ ଏମାନଙ୍କୁ କବି, ତାଙ୍କ କାବ୍ୟ-ଜୀବନର ଆଦ୍ୟକାଳର ସୃଷ୍ଟି ବୋଲି ସୂଚନା ଦେଇଛନ୍ତି । ଆତ୍ମଜୀବନୀ କିଂବା ଅନ୍ୟ କେଉଁଠି ଆଉ କୌଣସି କବିତାର ପ୍ରାଥମିକତା ସଂକ୍ରାନ୍ତରେ କିଛି ତଥ୍ୟ ମିଳୁ ନାହିଁ । ତଥାପି ଡକ୍ଟର ନଟବର ସାମନ୍ତରାୟ 'ଆଦର୍ଶ ଡାକ୍ତର'କୁ ନୀଳକଣ୍ଠଙ୍କର ପ୍ରଥମ କବିତା ବୋଲି ଅନୁମାନରେ କହନ୍ତି ।[୭]

---

୪ । ଆତ୍ମ-ଜୀବନୀ—ନୀଳକଣ୍ଠ ଗ୍ରନ୍ଥାବଳୀ (୧ମ)ପୃ ୩୬, ୧୯୬୩ ସଂ:

୫ । ମୁଖବନ୍ଧ—ଭକ୍ତଗାଥା—ନୀଳକଣ୍ଠ ଦାସ ।

୬ । ତତ୍ରୈବ ।

୭ । ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)
ଡ଼ଃ ନଟବର ସାମନ୍ତରାୟ ପୃ ୬୦୬ ।

ଅବଶ୍ୟ କବିଙ୍କର ଗ୍ରନ୍ଥାବଳୀ ତନଖି ସାରି କେହି କେହି ଏପରି ଅନୁମାନକୁ ସଂଦେହ କରିପାରନ୍ତି । ନୀଳକଣ୍ଠଙ୍କ ଭଳି ଜଣେ ସଚେତନ ଶିଳ୍ପୀ, ଜୀବିତାବସ୍ଥାରେ ଗ୍ରନ୍ଥାବଳୀର ପ୍ରକାଶ ଦେଖିଥିଲେ ମଧ୍ୟ ସେ ଯେ ଇଚ୍ଛାକୃତ ଭାବେ ଆପଣାର ପ୍ରଥମ କବିତା ରଚନାଟିକୁ ଅନ୍ତର୍ଭୁକ୍ତ କରିପାରି ନାହାଁନ୍ତି; ଏହା ସଂଦେହକୁ ପ୍ରସାରିତ କରିପାରେ । ଆଲୋଚନା ବେଳେ ଏପରି କଷ୍ଟ ଖୁଇ ଖୁଇକା ସଂଦେହର ସମ୍ଭାବନା ଅନୁଭବ କରିବାରୁ ଡ଼ଃ ସାମନ୍ତରାୟଙ୍କ ସହିତ ଯୋଗାଯୋଗ ମଧ୍ୟ ଦେଇ ମୁଁ ଜାଣିଲି ଯେ 'ଆଦର୍ଶତାରା' କବିତାଟିକୁ ଗ୍ରନ୍ଥାବଳୀରେ ନ ଥିଲେ ସୁଦ୍ଧା ନୀଳକଣ୍ଠଙ୍କର ପ୍ରଥମ କବିତା ବୋଲି ଅସ୍ୱୀକାର କରାଯାଇ ନପାରେ । ଗ୍ରନ୍ଥାବଳୀରେ ନଥାଇ, 'ବିଧି ଓ ବାସନ୍ତୀ' (ମୁକୁର, ୧୯୧୧, ଅକ୍ଟୋବର), 'ବର୍ଷର ଶେଷ ଗୋଲାପ' ( ଉତ୍କଳ ସାହିତ୍ୟ, ୧୯୧୧, ଅକ୍ଟୋବର), 'ଅଶ୍ରୁ' (ମୁକୁର, ୧୯୧୬, ଜାନୁଆରୀ) ଇତ୍ୟାଦି ଇଂରାଜୀରୁ ଅନୁଦିତ କବିତା ନୀଳକଣ୍ଠଙ୍କର ରଚନା ହିସାବରେ ଯେପରି ସତ୍ୟ, ସେହିପରି 'ଆଦର୍ଶ ତାରା' (ଜାନୁଆରୀ ୧୯୦୯) ।

ଆଦର୍ଶତାରା ପ୍ରଣୟର ଏକ ଅଶରୀରୀ ପ୍ରତିମା । ତାହାର ମାନସ-ସ୍ଫୁରଣରୁ କବିଙ୍କ ପ୍ରେମିକ ଜୀବନର ଉନ୍ମେଷ । କବି ସଂସାରାସକ୍ତ ନୁହଁନ୍ତି ତେଣୁ ତାଙ୍କ ମନ, ପ୍ରେମ ପାଇଁ ଦେହବାଦୀ ଭାବନାରେ ଭାବିତ ନୁହେଁ । ସେହି ଅଶରୀରୀ ପ୍ରଣୟ-ପ୍ରତିମା କବିଙ୍କର ଇନ୍ଦ୍ରିୟ-ପର ଚେତନାର ସାଥି । ତାଙ୍କପାଇଁ ତାହା ଆଶାର ଏକ ଜ୍ୟୋତି । ତେଣୁ ଏହାକୁ ସଂପର୍କ-ସଜଳ ପ୍ରଣୟାନୁଭବ ବ୍ୟତୀତ ମିଷ୍ଟିକ୍ ପ୍ରଣୟର ନିର୍ମଳ ଅନୁଭବ ବୋଲି ଗ୍ରହଣ କରାଯାଇପାରେ । ଏଠି ରୋମାନ୍ସର ଆଧିପତ୍ୟ ନାହିଁ । ନିଷ୍ଠା ଓ ନିର୍ମଳତାର ସ୍ଫୁରଣ ଅଛି । ସେହି ନିଷ୍ଠା ଭାସ୍ୱର ମାନସ ମନ୍ଥନ

ପାଇଁ କବି ହୋଇଛନ୍ତି 'ଉଚ୍ଚ ଅଭିଳାଷୀ' । ଏହାକୁ ନେଇ କବିଙ୍କର ଅନୁଭୂତ ଜଗତ ହସ ହସ ଓ ପ୍ରାଣଭୂମି ଉଷତ ।[୮]

କିନ୍ତୁ ଏହାର ଅନୁପସ୍ଥିତି ଘଟିଲେ ବା ଝଂଜା-ବଉଦ ଗ୍ରାସରେ ଏହା ଲୁଚିଗଲେ କବିମନ ନିରାହାର ଥାଇ ପୀଡ଼ା ପାଇଛି । 'ଜଗତର କାଠ' କବି, ଜାଗତିକ ସ୍ନାୟୁ ସଚେତନତାରୁ ନିର୍ଲିପ୍ତ ରହି ପ୍ରେରଣା ଓ ଭାବ ସ୍ପନ୍ଦ ପାଇଁ 'ଆଦର୍ଶତାରା' ଠାରେ ଆସ୍ଥା ସ୍ଥାପନ କରିଛନ୍ତି ।[୯] ତାରା ଏଠି ପ୍ରଣୟିନୀର ପ୍ରତିକଳ୍ପ । ଆଦର୍ଶ ପ୍ରଣୟ ବା ପ୍ରଣୟିନୀର ଉପାସନା କବିଙ୍କର ଲକ୍ଷ୍ୟ ।

ଏଥିପାଇଁ ବିରହ ବିତ୍‌ପାତ ଯାହାକିଛି ଆସୁଛି, ସେ ସବୁ, କବି ଜ୍ଞାନରେ କ୍ଷଣିକ । ଏଇ ଝଂଜାରୂପକ ବିରହ ବିତ୍‌ପାତ ବହିଗଲା ପରେ ପୁଣି କବି ଚିତ୍ତରେ 'ପ୍ରେମ ଜ୍ୟୋତି'ର ପ୍ରକାଶ ଘଟିବ ଏବଂ 'ଆଶା ତାରାର ବିବ୍ୟଧାରା' କବିଙ୍କ ଅନ୍ତରକୁ ସିକ୍ତ କରିବ; ତାହାର ପରଶରେ ନବ ପ୍ରେମ ରାଗରେ ତାଙ୍କ ପ୍ରାଣ ଉଚ୍ଛୁଳି ଉଠିବ—ଏପରି ବିଶ୍ୱାସ କବିଙ୍କ ମନରେ ଉଦିତ ହୋଇଛି ଏବଂ କବିଙ୍କର ପ୍ରେମିକ ଜୀବନ ଯେ କେବଳ ତାହାପାଇଁ (ଆଦର୍ଶ-ତାରା) ଏ କଥା ମଧ୍ୟ ସ୍ପଷ୍ଟ ଭାବେ କବିତାଟିରେ ସୂଚିତ ହୋଇଛି ।[୧୦]

୮ । ଉଚ୍ଚ ଅଭିଳାଷେ ମୋର ହସୁଥିଲା ଜଗତ
ଅନ୍ତରାଳେ ଦେଖି ମୁହିଁ ହେଉଥିଲି ଉଷତ ।
'ଆଦର୍ଶ ତାରା'—ନୀଳକଣ୍ଠ ଦାଶ

୯ । ଜଗତର କାଠ ମୁହିଁ ଥିଲି ନଭେ ତାହା ଚାହିଁ
ଦେଖି ଦେଖି ଲୁଚିଗଲା କି କରିବି ଚାହିଁରେ
ପ୍ରେମିକ ଜୀବନ ମୋର ଆଉ କାହା ପାଇଁରେ !
ଝଂଜା ବହିଗଲେ ପୁଣି 'ପ୍ରେମ ଜ୍ୟୋତି' ପ୍ରକାଶି
ହସିବ ମୋ ପ୍ରାଣ ପ୍ରିୟେ ତାରା ନଭେ ବିକଶି । ତତ୍ରୈବ ।

୧୦ । ଆଦର୍ଶତାରା—ଉତ୍କଳ ସାହିତ୍ୟ—ଜାନୁଆରୀ ୧୯୦୯ ।

ତେଣୁ ଆଦର୍ଶ ପ୍ରଣୟର ଉଦ୍‌ବୋଧନ ଓ ଅଭିବୃଦ୍ଧିରେ କବିଙ୍କର କାବ୍ୟ-ଜୀବନ ଯେ ସମସ୍ତ ତେଜରେ ପରିପୁଷ୍ଟ ହୋଇଛି ଏପରି ଧାରଣା ଏଥିରୁ କରାଯାଇପାରେ ଏବଂ ଶଂସିତ କବିତାଟି ଆଦ୍ୟରୁ କବି ବୋଧର ଆଦର୍ଶବସ୍ତୁକୁ ପ୍ରତିଫଳିତ କରି ତା'ଦ୍ୱାରା ଭବିଷ୍ୟତ ପ୍ରସ୍ତୁତି ପାଇଁ ଯେ ପ୍ରେରଣା ହୋଇଛି ଏହା ମଧ୍ୟ ଏଥିରୁ ସହଜରେ ଅନୁମିତ ହୁଏ ।

ଏହି ପ୍ରଥମ କବିତାର ଆଦର୍ଶ ଜିଜ୍ଞାସା ଆଉ ଏକ ଧାରାରେ ପ୍ରବାହିତ ହୋଇ ପରବର୍ତ୍ତୀ କାଳର ସୃଷ୍ଟି 'ଭକ୍ତିଗାଥା' (୧୯୧୨-୧୩) ରେ ସଂଗମ ଲଭିଛି । ଭକ୍ତିଗାଥାରେ କବି, ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ ଓ ଜ୍ଞାନୀ—ଏଇ ଚାରିପ୍ରକାର ଭକ୍ତଙ୍କ ବାଣୀର ଅତୀତ (transcedental) ଉକ୍ତ୍ୟାସକୁ ପରିସ୍ଫୁଟିତ କରିଛନ୍ତି ଏବଂ ତାହା ଆର୍ତ୍ତବାଣୀ, ପ୍ରଶ୍ନବାଣୀ, ଭକ୍ତବାଣୀ, ଆତ୍ମବାଣୀ, ଓ ବିଶ୍ୱବାଣୀ—ଏଇ କ୍ରମରେ ପ୍ରକାଶ ପାଇଛି ।

ଆର୍ତ୍ତୀଭକ୍ତ, ବ୍ୟକ୍ତି-ସତ୍ତା ବିସ୍ମୃତ । ତା'ର ଜୀବନ—ମରଣ—ଏଇ ଧାରାରେ ସେ ନାହିଁ ବରଂ ଅଛି ବିଭୁଙ୍କ ସକଳ ଅନୁଷ୍ଠାନ । ସେ ହିଁ କେବଳ ନିରାଶୀର ଆଶା ଓ ଦୁର୍ବଳର ବଳ । ତେଣୁ ତା'ର ଅର୍ଚ୍ଚନା ଏବଂ ନିର୍ଲୋଭ ଅର୍ଚ୍ଚନା ।[୧୧] ଜିଜ୍ଞାସୁ ପାଇଁ ବିଭୁ, ଏକ ବିସ୍ମୟ । ବେଳେ ବେଳେ ପୁଣି ସଂଶୟର ମଧ୍ୟବିନ୍ଦୁ

୧୧ । ଜୀବନ ମରଣ ମମ, ସବୁ ସେ ତୁମ୍ଭର
ବିଳାସ ବ୍ୟସନ ପାପ ପୁଣ୍ୟ ଅନୁଷ୍ଠାନ;
ନିରାଶ ଅଂତରେ ଯାଏ ତବ ଆଶା ଧରି,
ଦୁର୍ବଳ ମୁଁ ତବ ବଳେ ମହା ବଳୀୟାନ;
ସ୍ମରି ତବ ସେ ବିଭୂତି ଦେବାର୍ଚ୍ଚନ କରେ ନିତ
ନଗଣି ସେ ଅର୍ଚ୍ଚନାରେ ଫଳର ଭିଆଣ । ୧୯ ।
(ଭକ୍ତିଗାଥା—ଆର୍ତ୍ତବାଣୀ, ଗ୍ରନ୍ଥାବଳୀ ପୃ ୧୭୫)

କାରଣ ପାପୀରେ ଦୟା, ପ୍ରୀତିରେ ଲୀଳା, ଅପକର୍ମରେ ଶୃଙ୍ଖଳା ଓ ସତ୍ୟରେ ଯନ୍ତ୍ରଣା—ଏସବୁ ବିରୋଧାତ୍ମକ ବିଭୂତି ଯୋଗ ଦେଖି ଜିଜ୍ଞାସୁ ମନରେ କୌତୁହଳ ଆସୁଛି, ମନ ପୁଚ୍ଛୁଛି "ଦେଖିବ କି କାହିଁ ଅଛ ଧରି ବିଶ୍ୱସାରା' ?[12] ଙ୍କଂରୁ ଭକ୍ତର ବିଭୁବୋଧ ପ୍ରେମ ରସରେ ରସବନ୍ତ । ରସୋନ୍ମାଦରେ ଭକ୍ତର ଉଜ୍ଜ୍ୱଳତା ଓ ପ୍ରାଣର ପୁଲକ ଶିହରଣ ଠାରେ ପ୍ରକାଶିତ । ତା' ଦୃଷ୍ଟିରେ 'ଅନନ୍ତ ପରାଣ ବିଶ୍ୱେ, ବ୍ରହ୍ମାଣ୍ଡ ସବିତା' ।[13] ଅର୍ଥାର୍ଥୀ ପକ୍ଷରେ ବିଭୁ ସବୁ ଯୁକ୍ତି, ଦର୍ଶନ, ବିଜ୍ଞାନର ସ୍ଥିର ମେରୁଦଣ୍ଡ । ସବୁର ମୂଳପିଣ୍ଡ ।[14] ଜ୍ଞାନର ଚେତନାରେ ସୀମାବନ୍ତ ନର ପାଇଁ ବିଭୁ ହେଉଛି ଭୂମାଶକ୍ତି ।[15]

---

୧୨ । ପାପୀରେ ଏ ଦୟା ଯେବେ, ଏ ପୀରତି ଲୀଳା;
ଅପକର୍ମେ ଯେବେ ଏତେ ନାସର ଶୃଂଖଳା,
ନ କରୁଛି ପାପ କେତେ ଜନମି ଏଠୁ ମରତେ
ଦେଖିବ କି କାହିଁ ଅଛ ଧରି ବିଶ୍ୱସାରା ?
ଅନ୍ତରେ ବାହାରେ ବହିଯିବ ପ୍ରୀତିଧାରା ।୧୭। ପ୍ରଶ୍ନବାଣୀ-ପୃ ୧୬୬

୧୩ । ପ୍ରେମରସେ ରସବନ୍ତ ଅନ୍ତରାତ୍ମା ମମ
ରସୋନ୍ମାଦେ ଭକତର ଅଲକ୍ଷ ଲୋତକେ
ଗାଇବ ହେ ତବ କୃତି ପରାଣ ପୁଲକେ
ଅନନ୍ତ ପରାଣ ବିଶ୍ୱେ, ବ୍ରହ୍ମାଣ୍ଡ ସବିତା !୧୭। ଭକ୍ତବାଣୀ-ପୃ ୧୧୨

୧୪ । ତୁମ୍ଭେ ପ୍ରଭୁ ମୂଳମନ୍ତ୍ର ଯୁକ୍ତିର ସମ୍ବଳ
ଦର୍ଶନର ସାର ମୂଳପିଣ୍ଡ;
ସୃଷ୍ଟି ତତ୍ତ୍ୱ ନିରୀକ୍ଷଣେ ତୁମ୍ଭେ ସାର ସତ୍ୟ
ବିଜ୍ଞାନର ସ୍ଥିର ମେରୁଦଣ୍ଡ । ଆତ୍ମବାଣୀ-ପୃ ୧୮୪

୧୫ । ମୂଳାଧାର ତୁମ୍ଭେ ପ୍ରଭୁ ! ଜ୍ଞାନ ଏ ପର୍ଯ୍ୟନ୍ତ
ଲଭି, ସୀମାବନ୍ତନର ଗାଇବ କି ଭୂମା । ବିଶ୍ୱବାଣୀ-ପୃ ୧୮୮

ସୁତରାଂ 'ଭକ୍ତଗାଥା' କିଂବା 'ଉପାସନା'ରେ ମିଷ୍ଟିକ୍ ପରାନସ୍କତା ( **high seriousness** )ର ଗମ୍ଭୀରସ୍ୱର ଧ୍ୱନିତ । ବିଭୁବୋଧ ଓ ଐଶ୍ୱର୍ଯ୍ୟ ଯେନ ଆଦର୍ଶବଦ୍ଧ ଆଧ୍ୟାତ୍ମିକ ଆକର୍ଷଣ ଏଥିରେ ନାହିଁ । ତେଣୁ ଏହା ନୀଳକଂଠଙ୍କର ଦ୍ୱିତୀୟ କବିକୃତି ହେଲେ ମଧ୍ୟ ଯେଉଁ ଆଦର୍ଶ ଆକାଂକ୍ଷାର ଗୁଂଜରଣରୁ ତାଙ୍କ କାବ୍ୟ-ଜୀବନର ଉନ୍ମେଷ ହୋଇଥିଲା ତାହାର ପ୍ରଶସ୍ତ ଓ ଗମ୍ଭୀର ଅବଲମ୍ବନ ଏଠି ଘଟିନି; କବି ତହିଁରୁ ମୁକ୍ତ ହେବାର ସାଧନା କରି ନାହାନ୍ତି । ଏପରିକି ପରବର୍ତ୍ତୀ କାଳର କାବ୍ୟ ସୃଷ୍ଟି (ଅନୁବାଦ ବା ମୌଳିକ) ସମୂହପ୍ରତି ଆପାତତଃ ଦୃଷ୍ଟି ଦେଲେ ଅନ୍ୟାନ୍ୟ କାବ୍ୟ ବୋଧ ସମେତ ଏଇ ଆଦର୍ଶ ଅବବୋଧର ସ୍ଫୁରଣ ଲକ୍ଷ୍ୟ କରିହୁଏ । ଅତଏବ ନୀଳକଣ୍ଠଙ୍କ କାବ୍ୟକ ମାନସର ଭୂମିକା ଯେ ଜ୍ଞାନ ଓ ଦର୍ଶନର ସକଳ ସଂଯୋଗରେ ପ୍ରସ୍ତୁତ ହୋଇଥିଲା, ଏହା ଖୁବ୍ ସ୍ପଷ୍ଟ ।

## କାବ୍ୟ ପରିକ୍ରମା

ପ୍ରଣୟିନୀ (୧୯୧୯), ନୀଳକଂଠଙ୍କର ବି. ଏ. ପଢ଼ିଲା ବେଳର ରଚନା କିଂତୁ ପରବର୍ତ୍ତୀ କାଳରେ ପ୍ରକାଶିତ । ଏହା ଟେନିସନଙ୍କ ପ୍ରିନ୍ସେସ୍ କାବ୍ୟର ମୁକ୍ତ ଅନୁବାଦ । ତଥାପି ମୂଳ କାବ୍ୟର କଥାଂଶର ସେପରି କିଛି ସଂପ୍ରସାରଣ ବା ତହିଁରେ କିଛି ନୂତନ ସଂଯୋଜନା ଅନୁବାଦ ବେଳେ ଏଥିରେ କରାଯାଇ ନାହିଁ । କେହି ରାଜକୁମାରୀ କିଶୋର ଜୀବନରେ କୌଣସି ରାଜକୁମାରଂକ ପ୍ରତି ବାଗ୍‌ଦତ୍ତା ଥାଇ ସୁଦ୍ଧା ପରିଣତ ବୟସରେ ବିବାହ ବିମୁଖୀ ହୋଇ ନାରୀ ଜାତିର ଅଭ୍ୟୁଦୟ ପାଇଁ ରଚନାତ୍ମକ କାମରେ ଆତ୍ମନିୟୋଗ କରିବା ଏବଂ ନାରୀଂକ ପାଇଁ ବିଶ୍ୱବିଦ୍ୟାଳୟ ସ୍ଥାପନ କରି ତାହାର ପରିଚାଳନାରେ ମନୋନିବେଶ କରିବା ଇତ୍ୟାଦି

କଥାନ୍ୟାସର ଧାରା ସହ ଅନୁଦିତ କାବ୍ୟଟି ବିଶ୍ଵସ୍ତ । ପୁଣି ଏଥିପାଇଁ ପ୍ରଣୟୀ ରାଜକୁମାର, ରାଜଜେମାଙ୍କର ସଂକଳ୍ପ ଭଂଗର ଅଭିଳାଷରେ ଦୁଇ ଜଣ ସଖାଙ୍କ ସହିତ ନାରୀ ବେଶରେ, ସ୍ତ୍ରୀକ୍ଷେତ୍ର ପ୍ରବେଶ କଲାପରି ସ୍ତ୍ରୀ ପୁରୁଷଙ୍କ ପାଇଁ ନିଷିଦ୍ଧ ବିଶ୍ଵବିଦ୍ୟାଳୟରେ ଶିକ୍ଷାର୍ଥୀ ହେବାର ସୌଭାଗ୍ୟ ଲାଭକରି ପରେ ଚିହ୍ନା ପଡ଼ିବା ଓ ସେହି କାରଣରୁ ଜୀବନକୁ ବିପନ୍ନ କରିବା ଘଟଣାର କ୍ରମ ଏଥିରେ ମଧ୍ୟ ଅନୁରୂପ ଭାବେ ରକ୍ଷିତ । ରାଜକୁମାର ଓ ବନ୍ଧୁଗଣ ବିପନ୍ନ; ଏତିକବେଳେ ରାଜା ସୈନ୍ୟ ବଳ ସହ କୁମାରଂକର ସାହା ହେଲେ, ସେହିପରି ରାଜଜେମାଙ୍କୁ ମଧ୍ୟ ପିତା ଓ ଭ୍ରାତା ସାହାଯ୍ୟ କଲେ । ଦୁଇ ପକ୍ଷର ରାଜକୁମାରଙ୍କ ମଧ୍ୟରେ ପଚିଶ ଜଣ ସୈନ୍ୟ ବିଶିଷ୍ଟ ସେନାବଳର ଯୁଦ୍ଧ ହେଲା । ଯୁଦ୍ଧରେ ଜେମାମଣିଙ୍କ ପ୍ରତିପକ୍ଷ ପରାଜିତ ଓ ଆହତ ହେଲେ । ବିଶ୍ଵବିଦ୍ୟାଳୟ ଏକ ଚିକିତ୍ସାଳୟରେ ପରିଣତ ହେଲା । ଆହତ ରାଜକୁମାର ଚିକିତ୍ସା ନିକେତନରେ ଜେମାମଣିଙ୍କ ହୃଦୟ ଜୟ କଲେ । ପ୍ରାରଂଭ ଓ ପ୍ରାଂତ ଘଟଣାକୁ ନେଇ କଥା ଭାଗର ସଂରକ୍ଷା ଅନୁଦିତ କାବ୍ୟଟିରେ ବିଶ୍ଵସ୍ତଭାବେ ଏହିପରି କରାଯାଇଛି ।

ମାତ୍ର ଚରିତ୍ରର ନାମକରଣ ଓ ସ୍ଥାନିକ ଆରୋପଣରେ କିଂବା ପ୍ରସାଂଗିକ ଦୃଷ୍ଟି ଦାନରେ ଅନୁବାଦକ ପରିବର୍ତ୍ତନକୁ ବରଣ କରିଛନ୍ତି । ମୀଳକଂଠଂକ କାବ୍ୟରେ ରାଜକୁମାରୀ ଇଡ଼ା; ଜେମାମଣି ହିସାବରେ ନାମିତ ହୋଇଛନ୍ତି । ସେହିପରି ପ୍ରିନ୍ସ, ସ୍ଵଭାବରେ ଏବଂ ସାଇରିଲ୍ ଓ ଫ୍ଳୋରିୟାନ ନାମକ ସଖାଦ୍ଵୟ ଯଥାକ୍ରମେ ରତ୍ନଧ୍ଵଜ ଓ ପାରିଜାତ ନାମରେ ନାମିତ ହୋଇଛନ୍ତି । ବିଶ୍ଵବିଦ୍ୟାଳୟର ଶିକ୍ଷୟତ୍ରୀ ତଥା ଜେମାଙ୍କର ସଖିଦ୍ଵୟ ଯଥା ସାଇକ ଓ ବ୍ଲାନଚ; ମତି ଏବଂ ମହାଶ୍ଵେତା ନାମ ଧେନଛନ୍ତି । ସାଇକଙ୍କୁ ମତି ନାମ ଦେବାରେ କବି ଶବ୍ଦଟିର ମର୍ମ ପ୍ରତି ସଚେତନ

ଥିବା ଜଣାଯାଉଛି । ପୁଣି ମହାଶ୍ୱେତା ବା ବ୍ଲାନ୍‌ଚଂକ କନ୍ୟା ମେଲସାଙ୍କୁ ମଧୁମତୀ ନାମରେ ନାମିତ କରାଯାଇଛି ଏବଂ ବିଶ୍ୱବିଦ୍ୟାଳୟଟିକୁ ନାଳଂଦ ରୂପେ ନାମିତ କରାଯାଇ ଆର୍ଯ୍ୟ ଛବିର ମାୟା ସୃଷ୍ଟି କରାଯାଇଛି । ନୀଳକଂଠଂକ ନାଳଂଦ ଓ ଟେନିସନଂକ ବିଶ୍ୱବିଦ୍ୟାଳୟର ବର୍ଣ୍ଣନାକୁ ମିଳେଇ ପଢ଼ିଲେ ଏହାର ତାରତମ୍ୟ ଲକ୍ଷ୍ୟକର ହୁଏ ।[୧୬]

---

୧୬ । All round with laurel, issued in a court
Compact with lucid marbles, boss'd with lengths
Of classic frieze, with ample awnings gay
Betwixt the pillars and with great urns of flowers.
The Muses and the Graces, group'd in threes,
Enring'd a billowing fountain in the midst.
(Tennyson-Princess-Canto II)

ତୁଳନୀୟ—

ଆର୍ଯ୍ୟ କଳା ଅଳଂକାରେ ସୁଂଦର ଖୋଦନେ
ରମ୍ୟ ସ୍ତଂଭ ଚୟ, ଶୁଭ୍ରଚଂଦ୍ରାତପ ଶୋଭେ
ଶିରୋଦେଶେ ସେ ସ୍ତଂଭର; ରତନ-ଖଚିତ-
ମର୍ମ୍ମର-କୁସୁମ-କୁଂଡ଼େ ଲଳିତ-ଲତିକା;
ଅତୁଳ ଅପସରା ପୁଂଜ ମର୍ମ୍ମର ବିଗ୍ରହ,
ବିଶ୍ୱକର୍ମା କଉଶଳ ଖ୍ୟାତି ପରାଭବ
ରୁଚିର ବିଧାନେ ଘେରି ସୁରମ୍ୟ ସରସୀ
ପ୍ରାଂଗଣର ମଧ୍ୟଭାଗେ; ମୃଦୁଳ କଂପନେ
ଗୃମର ସୁଷମା କଣି ବିମଳ ଝରଣା
ଖେଳୁଥିଲା ବିଚମାଲେ ତହିଁ ।
(ନୀଳକଣ୍ଠ ଦାସ—ପ୍ରଣୟିନୀ, ୨ୟ ସର୍ଗ )

ପୁନଶ୍ଚ ଉପମା ଚୟନ, ଶବ୍ଦ ବିନ୍ୟାସ ଓ ମିଥ୍‌ର ଉଲ୍ଲେଖରେ ଆର୍ଯ୍ୟ ବା ଦେଶଜ ଆନୁଗତ୍ୟ ପ୍ରକାଶ ପାଇଛି । ଉଭୟଙ୍କର କେତୋଟି ପଂକ୍ତିକୁ ତୁଳନା କରି ଦେଖିଲେ ଏହାର ସତ୍ୟତା ଉପଲବ୍ଧି କରିହୁଏ ।[୧୭] ସମ୍ଭବତଃ କାହାଣୀଟିକୁ ଦେଶୀୟ ଗ୍ରାହକତାର ଅନୁକୂଳ କରିବା ପାଇଁ ଅନୁବାଦ ବେଳେ ମାନକଣ୍ଠ; ଏଇ ସ୍ୱାଧୀନତା ଶ୍ରେୟସ୍କର ବୋଲି ବିବେଚନା କରିଛନ୍ତି । ଏପରିକି ଭାରତୀୟ ଉଷା-ପ୍ରଦୋଷଠାରୁ ଆରମ୍ଭ କରି ବୈଦିକ ନାରୀ, ଇତିହାସର ଗୌରବଶାଳୀ ବ୍ୟକ୍ତିତ୍ୱ ଓ ଘଟଣାଳିପି, ପୁରାଣ-ପୁରୁଷ ଏବଂ ବିହଙ୍ଗକୁଳଙ୍କ ସମାବେଶ ହେତୁ ମନେହୁଏ ସେମାନେ ଲୌକିକ ଆବଶ୍ୟକତାର ଅନୁରୋଧରେ ମୂଳ କାବ୍ୟର ଶବ୍ଦପ୍ରତିମା ଓ ଉପଲକ୍ଷିତ ଘଟଣା ବା ବ୍ୟକ୍ତିଭିତର ରୂପଠାରୁ ବଦଳଯାଇଛନ୍ତି ।

ମୂଳ କାବ୍ୟର ଆଦର୍ଶ କିଂବା କୌତୁକକଳା ମାନକଂଠଙ୍କୁ ଅନୁବାଦ ପାଇଁ ଆକୃଷ୍ଟ କରି ନାହିଁ; କରିଛି ଅଧ୍ୟାପକଂକର ଏହି

---

୧୭ । କହିପାରେ ଛଳି, 'ଆସି ପ୍ରହ୍ଲାଦ ବିଭବେ,
ଧନେ ରହି ବାହାରିଲେ ନହୁଷ ବିପାକେ ।'
ଗଲେ ତହିଁ ଋତୁଧ୍ୱଜ, କହି ଏହିପରି,
ସଂଦେହେ ହଲାଇ ମଧ୍ଯ ଶୈବାଳ-ସୀମାଂତ
ମଣିଲେ ନିଷ୍ଫଳ ହେବେ ଋତୁଧ୍ୱଜ ତହିଁ ।

ତୁଳନୀୟ—

**He added, 'lest some classic angel speak**
**In scorn of us, "They mounted, Ganymedes,**
**To tumble, vulcans, on the second morn.**
**But I will melt this marble into wax**
**To yield us farther furlough :**
**(Tennyson—The Princess-Canto III)**

କାବ୍ୟ-ଚର୍ଚ୍ଚାର ଚମତ୍କାରିତା । ସେଥିରେ ଅନୁପ୍ରାଣିତ ହୋଇ ସେ ଏହି କାବ୍ୟ ଅନୁବାଦ କରିଥିବା କଥା ଉତ୍ସର୍ଗ ପତ୍ରରେ ଉଲ୍ଲେଖ କରିଛନ୍ତି । ତେବେ ଏହା ସ୍ପଷ୍ଟ ଯେ କୌଣସି ଆଦର୍ଶର ଅବବୋଧ କିଂବା ନୂତନ ବିଭବର ଉନ୍ମୋଚନ ପାଇଁ ଅନ୍ୟାନ୍ୟ କାବ୍ୟପରି ଏହି କାବ୍ୟଟି ପରିକଳ୍ପିତ ନୁହେଁ ।

ଯେପରି ହୋଇଛି 'ଦାସ ନାଏକ' (୧୯୨୩) । 'ନା'ଣ୍ଟର ସ୍ୱଭାବ ସୁନ୍ଦର ସଚ୍ଚୀତ୍ର ପାଖେ ପ୍ରକୃତର ସାଧୁ ଓ ମୁକଠୋର ପ୍ରୀତି ସାଧନ ସାହିତ୍ୟ ରାଜ୍ୟରେ ଗୋଟିଏ ନୂତନ ବିଭବ' ଏବଂ ଏହି ବିଭବ ପ୍ରତି ଆଦର ହେତୁ ଟେନିସନଂକ 'ଏନକ ଆଡ଼େନ'ରୁ 'ଦାସ ନାଏକ'ର ଅନୁବାଦ ସଂଭବ ହୋଇଥିଲା ।[୧୮]

ସୁତରାଂ ଏହି କାବ୍ୟର ଅନ୍ତରାଳରେ ଆଦର୍ଶର ଅବବୋଧ ପାଇଁ ନିଷ୍ଠା ସୂଚିତ ଓ ନୂଆ କିଛି ସାହିତ୍ୟକ ବିଭବର ଯୋଗପାଇଁ ମୋହିଥିବା ଲକ୍ଷିତ । ତେବେ କାବ୍ୟଟି ଲୋକେ ବୁଝିବା ଭଳି ଭାଷା ଓ ଭାବରେ ଲିଖିତ ଏବଂ ସାଧାରଣ ଧରେଇ ଭାଷାର ଶବ୍ଦ ଯୋଗେ ଅନୂଦିତ । ଅନୁବାଦ ପରେ ଏନକ୍ ଏଠି ଦାସ ନାଏକ, ଫିଲପ୍ରେ ଲକ୍ଷଣ, ଏବଂ ଏନି, ମେଳି ନାମରେ ଚିହ୍ନିତ ହୋଇଛନ୍ତି । କଥା-କେନ୍ଦ୍ର କିଂବା ଉପଘଟଣାବଳୀର କୌଣସି ବିବର୍ତ୍ତନ ହୋଇ ନାହିଁ । ପରିଣତିରେ କାରୁଣ୍ୟ ରସର ଗାମ୍ଭୀର୍ଯ୍ୟ ମୂଳ କାବ୍ୟପରି ରକ୍ଷିତ ହୋଇଛି । ନୀଳକଂଠ ଏହି କାବ୍ୟଟିର ଅନୁବାଦରେ ମାର୍ମିକ ବିଶ୍ୱସ୍ତତା ମୂଳଲେଖା ସହିତ ଆଣିପାରିଛଂନ୍ତି ।

କୋଣାର୍କେ (୧୯୧୯) କବିଂକର ଏକ ନୂତନ ମୌଳିକ କାବ୍ୟ । ଇତିହାସ ଓ କିଂବଦନ୍ତୀର ଆଧାରରେ ଜାତୀୟ

---

୧୮ । ଦାସ ନାଏକ—ଭୂମିକା, ନୀଳକଂଠ ଗ୍ରନ୍ଥାବଳୀ—୧ମ ଭାଗ ୧୯୬୩ ସଂସ୍କରଣ ।

ଜୀବନକୁ ମୂର୍ତ୍ତିମାନ କରି ତାହାର ପ୍ରେରଣାରେ ବର୍ତ୍ତମାନର ବଂଶଧରଂକୁ ଉଦ୍‌ବୁଦ୍ଧ କରିବା ମନୋଭଂଗୀରେ ନୂତନତା ନିହିତ । କାବ୍ୟ-ଭୂମିର ଅଂତରାଳରେ ନିର୍ଦ୍ଦିଷ୍ଟ ଏକ ଘଟଣାର ବାସ୍ତବ ଅନୁଭବ ସଂଚିତ । କବିଂକର ଶିକ୍ଷକ ଜୀବନ ଏ କାବ୍ୟଟିର ସୃଷ୍ଟି ପାଇଁ ଅନୁକୂଳ ପ୍ରେରଣା ସଂଗ୍ରହକ । ୧୯୧୭ ମସିହାରେ ଛାତ୍ରଂକ ସହ କୋଣାର୍କ ପରିଭ୍ରମଣ କବି ମନରେ ଭାବନାର ଗୁପ୍ତଧନ ସାଇତି ରଖିଥିଲା । ପରବର୍ତ୍ତୀ କାଳରେ ସେଇ ଭାବନା-ସମଗ୍ର 'କୋଣାର୍କେ'ରେ କାବ୍ୟ-ଭାଷା ଲାଭ କଲେ ।

'କୋଣାର୍କେ' ଇତିହାସ ନୁହେଁ; କାବ୍ୟ । ଇତିହାସ ଏହାର କଥା ଭୂମିରେ କିଂଚିତ ସ୍ଥାନ ଦେଇଛି ମାତ୍ର । କାବ୍ୟଗତ ଅନୁପମତାରେ ଏହାର ପ୍ରାଣଧାରା ଉତ୍ସରିତ । ଏହାର ଆଦ୍ୟ ସମାଲୋଚକ ଡକ୍ଟର ମାୟାଧର ମାନସିଂଙ୍କ ଅନୁଭବରେ 'କୋଣାର୍କେ' ହେଉଛି ଓଡ଼ିଆ ଭାଷାରେ ଅନୁପମ କାବ୍ୟ । ସମୃଦ୍ଧ ବଂଗଳା ଭାଷାରେ ମଧ୍ୟ ଏପରି ଖଣ୍ଡେ କାବ୍ୟଥିବା ତାଙ୍କୁ ଅଜ୍ଞାତ ।[୧୯]

'କୋଣାର୍କେ' କାବ୍ୟର ପ୍ରଥମାଂଶ ଏକ ନିର୍ଦ୍ଦିଷ୍ଟ ଅନୁଭବ ଜାପି ଓ ଉଚ୍ଛ୍ୱାସ ଧାରାକୁ ନେଇ ପରିକଳ୍ପିତ । 'ରାମଚଣ୍ଡୀ ଠାରେ ରାତି' କବିମନକୁ ବିବ୍ରତ ଏବଂ ତାଂକର ଆଶା-ସଂଚୟକୁ ଉଚ୍ଛିନ୍ନ କରିଛି । ଏଥିପାଇଁ ଦାୟୀ ସମୁଦ୍ରର ଅସହଯୋଗିତା । ସମୁଦ୍ର-ନାଚୁଛି, ଝଂଜା-ଝଡ଼ର ସହସ୍ର ପଦ ପାତରେ । ସୌନ୍ଦର୍ଯ୍ୟ-ପିପାସୀ କବିମନ ଏବଂ ସୁଖାମୋଦୀ ଶିଶୁ ପ୍ରାଣ ବିଡ଼ମ୍ବିତ ହୋଇଛି । ତେଣୁ ଶିଶୁମାନଂକ ସମେତ କବିର ମନକୁ ଉଚ୍ଛାହିତ କରିବା ପାଇଁ କୌଣସି ସହଯୋଗ, ସମୁଦ୍ର ପକ୍ଷରୁ ମିଳନାହିଁ । ଏଇ ସମୁଦ୍ରର ଭିନ୍ନମୁଖୀ ଆଚରଣ କବିମନରେ ଭରିଦେଇଛି ମମତାର

୧୯ । ନୀଳକଂଠ ଦାସ—କୋଣାର୍କେ—ଭୂମିକା 'କ'—ଗ୍ରନ୍ଥାବଳୀ ୧ମ—୧୯୬୩ ସଂସ୍କରଣ ।

ଆଦ୍ର୍ଶତା । ଶିକ୍ଷକ କବି ମାଳକଂଠଂକର ପିତୃ ବ୍ୟକ୍ତିତ୍ୱ ଗୁଣମାନଂକ ମନର ନିଭୃତସ୍ତରରେ ପଦ୍ମାଂଶ ସେମାନଂକର ତାତ୍‌କାଳୀକ ମାନସିକତାକୁ ଉପଲବ୍‌ଧି କରିଛି । କୁଆଁର ପୁନିଅଁର ପ୍ରୀତିପାବଣ ଯେଉଁ ସାମାଜିକ ଆହ୍ଲାଦର ସଂପଦରାଶି ପୁରରେ ପୁରରେ ଏବଂ ଓଡ଼ିଆର ଅନ୍ତରେ ଅନ୍ତରେ ବାଣ୍ଟି ଦେଇଥାଏ ତାହାର ସଂଭାବ୍ୟ ଅନୁଭବ ପ୍ରବାସୀ କବି ସହଗାମୀ ଗୁଣମାନଂକର ମନନେଇ ଲାଭ କରି ପାରିଛନ୍ତି ।

କବିର ହୃଦୟ ଏକ ସ୍ୱତନ୍ତ୍ର ଗୋଲକ ହେଲେବି ଅନ୍ୟର ଅନୁଭବକୁ ଯଥାର୍ଥ ସମୟରେ ଆପଣାର ବୋଲି ମାନିନେବା ମାଳକଂଠଂକର ଏକ କଳା-କୌଶଳ । ସେଇ ଅନୁଭବ ଓ ପ୍ରସାରିତ କଳ୍ପନା ଯୋଗୁ ପ୍ରବାସର ଗୁଣ ଓ ସ୍ୱବାସର ପିତାମାତା ପରିଜନଂକ ଭିତରେ ଥିବା ଦୂରତ୍ୱର ବ୍ୟବଧାନକୁ ଘୁଞ୍ଚେଇ ଦେଇଛନ୍ତି । କବି, ଏକାସ ଏକଇ ସ୍ଥାନରେ ଉଭୟଂକର ଚିତ୍ତାବସ୍ଥା ଅନୁଭବ କରିପାରିଛନ୍ତି ।

ଜନମୀର ଗୁରୁ ବେଦନା କିଂବା ଭଗିମାର ବିଷାଦ ସ୍ମରଣ କରି ଏପରି ଏକ ପରିସ୍ଥିତିରେ ଚମକି ଉଠିବା ଯେପରି ସତ୍ୟ, ସେହିପରି ପବନର ଝଂକାରରେ ପଲକେ ପଲକେ ଶିଶୁର ଅନାଗତ ପଦଧ୍ୱନି ଶୁଣିବାର କୌତୁହଳ ପ୍ରକାଶ କରୁଥିବା ପିତା-ମାତାଂକର ମନୋଭାବ ମଧ୍ୟ ଏହି ସମୟ ପାଇଁ ସତ୍ୟ । ସତ୍ୟର ଏଇ ଦୁଇ ପାର୍ଶ୍ୱ ଏବଂ ତା'ର ଭୂମିକା ଉପରେ କବିର ଅନୁଭବ ଓ କଳ୍ପନା ଦୃଷ୍ଟି ଏଠି ପରିପୂର୍ଣ୍ଣ ରୂପେ ପ୍ରକାଶ ପାଇଛି ।

ସଂବେଦନଶୀ କବିଚିତ୍ତ ଶିଶୁମାନଂକର ମନୋଭଂଗୀ ସହିତ ପ୍ରାୟ ଏକ ହୋଇପାଇଛି । କଳ୍ପନା ଚକ୍ଷୁରେ ଶିଶୁ ମନର ସ୍ତର ପରେ ସ୍ତର ସେ ଅନୁଭବ କରିଛନ୍ତି । କିଂତୁ ଯେତେବେଳେ ସେ

କାଳ ସଚେତନ ହୋଇ ଉଠିଛନ୍ତି ସେତେବେଳେ ସେ ଶିଶୁ ମନୋଭାବରୁ ଦୂରେଇ ଯାଇଛନ୍ତି । ପ୍ରବୀଣ ମନର ଆଧିପତ୍ୟ ତାଂକଠି ପ୍ରକାଶ ପାଇଛି । ସେଠି କୌତୁକ ନାହିଁ ଅଛି ପ୍ରଜ୍ଞା । ଶାମୁକା ତାଂକ ପାଇଁ ନିରର୍ଥକ ବୋଧ ହୋଇଛି । ଶିଶୁ ପକ୍ଷରେ ତାର ମୂଲ୍ୟ କିଂତୁ କୌତୁକପ୍ରଦ ।

କବି ରୋମାଣ୍ଟିକ ଆବେଗରେ ମର୍ମୋଚ୍ଛଳ ଓ ବ୍ୟକ୍ତି-ତ୍ରବଣ ହୋଇ ପଡ଼ିଛନ୍ତି । ତେଣୁ କବିଂକ ଶୈଶବ ସ୍ମୃତିର ରୋମନ୍ଥନ ଏଇଠି ଦେଖା ଦେଇଛି ଏବଂ ତାହା ସୁଦୂର ପ୍ରସାରୀ ଭାବର ଆଲୋଡ଼ନ ପାଇଁ ପୃଷ୍ଠପୀଠିକାରୂପେ କାର୍ଯ୍ୟ କରିଛି । କଳ୍ପନା-ବିଳାସ ସହିତ ପରିସ୍ଥିତିର ସଂଭାବ୍ୟ ଭାବନାରେ କବି ଚିତ୍ତ ଅଲୋଡ଼ିତ ହୋଇଛି । ଶିଶୁମାନଂକ ପାଇଁ କବି ଚିତ୍ତରେ ଦରଦ ଓ ସେମାନଂକ ଆଶାର ପରିପୂର୍ତ୍ତି ପାଇଁ ଉତ୍କଣ୍ଠା ବ୍ୟାପକତର ହୋଇ, ଉଠିଛି ଏଇ ଦୁର୍ଦ୍ଦିନ ପରିବେଶ ଭିତରେ ।

କବି ଚିତ୍ତ ଅତୀତ ଓ ବର୍ତ୍ତମାନରେ ବିଚରଣ କରି ଜାତିର ଦୁର୍ଦ୍ଦିନକୁ ଅନୁଭବ କରିପାରିଛି । କୋଣାର୍କ, କଂକାଳସାର ପୁରାଣ କୀର୍ତ୍ତି । ତତ୍‌କାଳୀନ ବିପର୍ଯ୍ୟୟ ହେତୁ ଏହାର ଶିଳ୍ପ ରୂପ ବିକଟ ଓ ବିଭତ୍ସ । ଏ କାଳରେ ସେଇ ବିଭତ୍ସତାକୁ ସରସତାରେ ଜୀବନ୍ତ କରିବା ପାଇଁ ହୁଏତ ଧଳା ରଜନୀର ପ୍ରଲେପ ଏକମାତ୍ର ସହାୟକ ହୋଇପାରେ, କିଂତୁ ଘୋର ତାମସୀ ରଜନୀ ସେଥିପାଇଁ ପ୍ରତୋଷଦକ ନୁହେଁ । ଅତୀତକୁ ବର୍ତ୍ତମାନରେ ତୁଳନା କରି କବି କାଂଦୁଛନ୍ତି ଅତୀତର ଶୈଶବ ସ୍ମୃତି ଏବଂ କୋଣାର୍କ ଦର୍ଶନର ଆହ୍ଲାଦପୂର୍ଣ୍ଣ ଆବେଗ ଆଜି ତାଂକ ପାଇଁ କୌଣସି ଚମକ ଦୀପ୍ତ ଅନୁଭବ ଦେଇ ପାରୁନାହିଁ । ସେତେବେଳର ବିସ୍ମୟ, ଉତ୍କଳର କୀର୍ତ୍ତିଭସ୍ମର କୋଣାର୍କ ପ୍ରତି କବିର କୌତୁକ ଓ ଅନାହତ ଆଗ୍ରହ ଆଜି କ୍ଷୟ ପ୍ରାପ୍ତ । କୋଣାର୍କର ଅଶ୍ମାରୋହୀ ଚିତ୍ର

ଦର୍ଶନରେ କବି ମନର ବିମୂଢ଼ତା । ଏହା ଶିଳ୍ପ ସୃଷ୍ଟିର ଜୀବନ୍ତ ସ୍ମୃତି ଏପରି କଳନା କରିବାରେ କୋଣାର୍କଦ୍ରଷ୍ଟା କବିର ଯେଉଁ କୌତୁକ ଭାବ ତାହା ହୁଏତ ଆଜି ସଂପୂର୍ଣ୍ଣରୂପେ ଅନୁପସ୍ଥିତ ।[୨୦]

ଶିଶୁମାନଙ୍କର ସାଂପ୍ରତିକ ଅବସ୍ଥାକୁ ଅନୁଧ୍ୟାନ କରି କବି ସଚେତ ଭାବେ କୋଣାର୍କର ବିଶାଳ ରୂପ ମନ ଭରି ଦେଖିବା ପାଇଁ ଚେଷ୍ଟା କରିଛନ୍ତି । ପରିବେଶ ସହିତ ପରିସ୍ଥିତି ମଧ୍ୟ କବିଙ୍କୁ କୋଣାର୍କର ପ୍ରତି ଐତିହାସିକ ବ୍ୟକ୍ତିତ୍ୱ ଅନୁଧ୍ୟାନ ପାଇଁ ପ୍ରେରଣା ଯୋଗାଇଛି । ଐତିହାସିକଭୂମି କୋଣାର୍କକୁ ବାଳକକୂଳ ଯଥାରୀତି ଅନୁଭବ କରିବେ, ଏପରି ସଂଭାବନା କବି ମନରେ ତେଣି ଉଠିଛି ।[୨୧] ଅତୀତର ଉପାସନା ଏବଂ ତାହାରି ମାଧ୍ୟମରେ ଜାତୀୟ ଜାଗରଣ, ହେଉଛି କବିଙ୍କର ମୁଖ୍ୟ ଲକ୍ଷ୍ୟ । ତେଣୁ 'ରାମଚଂଡ଼ୀ ଠାରେ ରାତି' ଏବଂ ସେଇ ରାତିର ପ୍ରଚଣ୍ଡତା ଭିତରେ ଶିଶୁଗଣଙ୍କ ଅବସ୍ଥା କବିଙ୍କୁ ହୁଏତ ଅତୀତର ସ୍ମରଣ ପାଇଁ ପ୍ରେରଣା ଦେଇଛି ।

ଏପରି ହେଲେ ଉତ୍ତରଜଗଣ ଯେ ପୂର୍ବଜଙ୍କ ସଂଗେ ଆତ୍ମାକୁ ମିଶେଇ ପାରିବେ ଏବଂ ଅତୀତରୁ ଅତୀତ ଭିତରକୁ ଯାଇ ଏ ଜାତିର ସାଂସ୍କୃତିକ ଜୀବନ ଧାରାକୁ ଅଂଗେ ଅଂଗେ ଦେଖି ପାରିବେ, ସେଇ ବିଶ୍ୱାସ କବିଙ୍କୁ ତତ୍ପର କରିଛି ଗତଲଗ୍ନର

୨୦ । ପୃଥୁ ବାଳବର, ପର୍ଯାଣେ ଭୁଂଗ ବପୁଷ୍କ ବୀର
ଦେଖି ଶିଶୁ ପ୍ରାଣେ କି ହେଲା ? କ୍ଷଣେ ରହିଲା ସ୍ଥିର ।
(କୋଣାର୍କେ—୭/୧୦୫-୧୦୭ ପଦ)

୨୧ । ଅଇତିହାସିକ ଭୂମି ଏ ଏଥି ବାଳକକୂଳ
ଇତିହାସ ସ୍ମୃତି ପୁଲକେ ଲବେ ହେବେ ବିହ୍ୱଳ ।
(କୋଣାର୍କେ-ସପ୍ତମ ଶ୍ଳୋକ-ପୃ ୩୧୦ ନୀଳକଣ୍ଠ ଗ୍ରନ୍ଥାବଳୀ)

ବିସ୍ତାରିତ ପରିଧି ଛୁଇଁବା ପାଇଁ ।'' କୋଣାର୍କକୁ ଭିତ୍ତି କରି କବିମନ ଅତୀତର ସାଗର ବେଳାର ଗୌରବ ସ୍ମୃତି ବିଜଡ଼ିତ ଉପଳ ଖଣ୍ଡ ସଂଗ୍ରହ କରିଛି । ଏଇ କୋଣାର୍କ କୂଳ, ସାଗରର ଉତ୍ତଳା ବକ୍ଷ, ଓଡ଼ିଆ ନାବିକର ସମୃଦ୍ଧି ପାଇଁ ଦାୟୀ । ଏଇ ମନ୍ଦିର ଉତ୍କଳୀୟ ସଂସ୍କୃତି ଓ କଳା ବୋଧର ପରମ୍ପରାର ମୂକ ସାକ୍ଷୀ । ଏଇ ବେଳା ଉତ୍କଳୀୟ ଭକ୍ତି ବିଭବର ପ୍ରସାର ପୀଠ ଏବଂ ସାଧବ ଲଳନାର ଶୋକ ସ୍ମୃତିରେ କରୁଣାକ୍ତ, ପୁଣି ଉତ୍କଳୀୟ ଶୌର୍ଯ୍ୟ ଶକ୍ତିର ଉଚ୍ଛ୍ୱାସ ସ୍ୱରରେ ରୁଦ୍ର ।

କବି କୋଣାର୍କର ବାସ୍ତବ ଅବସ୍ଥିତିକୁ ଅବଲୋକନ କରି ତାହାପ୍ରତି ବିଷାଦର ଅନୁଭବରେ ଘାରଗ୍ରସ୍ତ ହୋଇ ପଡ଼ିଛନ୍ତି । ଏଇ ମର୍ମ୍ମପୀଡ଼ା ରୋମାଣ୍ଟିକ ବେଦନା ବୋଧ ପରି ଅନ୍ତର୍ଭେଦୀ ।

କୋଣାର୍କର ପୁଣ୍ୟତା ଆଜ ନାହିଁ । ଚଂଦ୍ରଭାଗାର ବେଳାକୂଳ ପୁଣ୍ୟ ବର୍ଜିତ; ରାମଚଂଡ଼ୀ ପୀଠତ୍ୟାଗୀ । ଲୋକକଥାର ବିଶ୍ୱସ୍ତ ସଂଯୋଗରେ ଯବନ ଦଂଡ଼ରୁ ମୁକ୍ତି ଲାଗି ରାମଚଂଡ଼ୀଙ୍କ ପଳାୟନକୁ, ଏଠାରେ କାବ୍ୟିକ ସ୍ୱୀକୃତି ଦିଆଯାଇଛି । କୁଶ-ଭଦ୍ରାର ଶଯ୍ୟା ଅପସାରିତ ହେବା ଘଟଣା ମଧ୍ୟ ସେଇପରି କିଂବଦନ୍ତୀର ଆଶ୍ରୟରେ ଗଢ଼ି ଉଠିଛି । ଗୃହହ ନଗରୀର ବାଣିଜ୍ୟିକ ବିଭବ ଆଜ ଧ୍ୱଂସ କାଳର ଗ୍ରାମ ଗ୍ରାସରେ ଲୁପ୍ତ । ସବୁର ଉଚ୍ଛେଦ ପରେ କେବଳ ବଂଚିଛି କୋଣାର୍କର ମୁଖଶାଳା

୨୨ । ଅତୀତ ବିଭବ କାହାଣୀ କହେ ବିବିଧ ରଂଗେ
ଆତ୍ମାକୁ ବିଶୋଭି ମିଶିବେ ପୂର୍ବ ପୁରୁଷ ସଂଗେ
ଅତୀତୁ ଅତୀତ ପ୍ରସାରେ ବହି ଜୀବନ ଧାରା
ବ୍ୟାପିଯିବ ମହା ବିସ୍ତାରେ ଭେଦି ଶରୀର କାରା
(କୋଣାର୍କେ—ସପ୍ତମ ଶ୍ଳୋକ-ପୃ ୩୧୦)

ପ୍ରାଚୀନ ପୂର୍ବପୁରୁଷଙ୍କ ପ୍ରେତ ପରି । ପୂର୍ବଜଙ୍କ ଆତ୍ମାର କୀର୍ତ୍ତି—କୋଣାର୍କ; ତେଣୁ ତା'ର ପଥରର ଆତ୍ମାରେ ପୂର୍ବ ପୁରୁଷଙ୍କ ଆତ୍ମାର ଅଭିନ୍ନ ଏକତ୍ୱ କବି ଲକ୍ଷ୍ୟ କରିଛନ୍ତି । ଏ ଜାତିର ଜୀବନ ଧାରା ଓ ବିଭବଶାଳୀ ପରଂପରା କୋଣାର୍କର ଶିଳା ତଳରେ ଲୁକ୍କାୟିତ । ସେଇ ବିଭବଶ୍ରୀକୁ ଶିଶୁପ୍ରାଣ ଧରିନାହିଁ କି ନାହିଁ, ସେପରି ଅନୁଭବରେ ଆପଣା ପ୍ରାଣକୁ ଉଲ୍ଲସିତ କରିଛି କି ନାହିଁ ତା'ର ହିସାବ ନିକାଶ କବି କରିବାକୁ ଇଚ୍ଛା କରିଛନ୍ତି । ଶିଶୁ ସ୍ୱପ୍ନ ସହରରେ ବିଚରଣ କରି ଏ ସମ୍ପଦକୁ ସଂଚୟ କରୁ; ଏହାହିଁ ହେଉଛି କବିଙ୍କର ଉଦ୍ଦେଶ୍ୟ । ତେଣୁ ପ୍ରତିକ୍ଷେତ୍ର ଅନୁଭବରେ କାଳର ଗୀତ ସବୁ ଶିଶୁ ମନ ଚିହ୍ନି ନେଉ ଏ କଥା ସ୍ପଷ୍ଟ ଭାବେ କବି ଘୋଷଣା କରିଛନ୍ତି । ଏହାହିଁ ହେଉଛି ଇତିହାସର ଉପାସନା ପାଇଁ କବି ପକ୍ଷରେ ଏକ ଅଭିନବ ଅବଲମ୍ବନ ।

ଏପରି ମାଧ୍ୟମ ବଳରେ କବି ବିଭିନ୍ନ ଐତିହାସିକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଓ ତା'ର ମହାତ୍ମ୍ୟ ସହିତ ମଧ୍ୟ ପ୍ରତ୍ୟେକଙ୍କୁ ପରିଚିତ କରେଇବା ପାଇଁ ଇଚ୍ଛା କରିଛନ୍ତି । ବାରବାଟୀ, ଯାଜପୁର, ଧଉଳି, ଚୋଳଭାଲୁ (?) ତାମ୍ରଲିପ୍ତି ଇତ୍ୟାଦି ସେମାନଙ୍କର ସ୍ୱମହତ୍ତ୍ୱ ନେଇ କବି ମନରେ ସ୍ଥାନ ପାଇଛନ୍ତି ଏବଂ ଏ' ଜାତିର ପୂର୍ବ ପୁରୁଷ ଗଣ ଇତିହାସପୁରୁଷ ରୂପେ ସେମାନଙ୍କ ପାଇଁ ପ୍ରେରଣାର ଆଧାର ଯୋଗାଇଛନ୍ତି ।[23] ଜାତିର ମନନ କବିର ମୌଳିକ ରୁଚିଭୂମି-ସବୁଠି ସ୍ପନ୍ଦିତ ହୋଇଛି ଜାତୀୟ ମାନସିକତାର ଉଚ୍ଚାରଣ । ଓଡ଼ିଆ ନାରୀ; ସାଧବ ବା କୃଷକ ବଧୂ, ରଣଜିଣି ଆସିବା ପାଇଁ ପ୍ରତୀକ୍ଷାପର ହୋଇ ସ୍ୱାମୀଙ୍କୁ ମଧୁଶଯ୍ୟା

---

୨୩ । ପିତାମହେ ତବ ଓହ୍ଲାଇ ସରଗରୁ ଚଳିକେ
ସରଗେ ସରଣୀ ଦେଖାଇ ଦେବେ ବନ୍ଧୁ ପୁଲକେ ।
(କୋଣାର୍କେ—୧୦/୨୨୫-୨୨୬ ପଦ)

ବାସରରୁ ବିଦାୟ ଦେଉଛନ୍ତି । ସେ, ସତେ ଯେମିତି ଜାଗ୍ରତା ବୋଧର ପୁଲକ ଘେନି ଚଂଚଳ ।[୨୪]

ମୋଟ ଉପରେ କାବ୍ୟଟିର ଷଷ୍ଠରୁ ଏକାଦଶ ଶ୍ଳୋକ ମଧ୍ୟରେ କବି ଆପଣା ଜୀବନର ଅତୀତ ଭୂମିରେ ସ୍ମରଣକରି କୋଣାର୍କର ସ୍ମୃତି ଦୃଷ୍ଟିସୀମାକୁ ଆଣିଛନ୍ତି । କୋଣାର୍କର କୀର୍ତ୍ତି, ତାର ପୁରାତତ୍ତ୍ୱ, କାରୁଖୋଦନ ଏହାର ବେଳାକୂଳର ବାଣିଜ୍ୟିକ ସମୃଦ୍ଧି ଏବଂ କୋଣାର୍କ ଭୂଇଁର ଭକ୍ତିବିଭବ, ଶୌର୍ଯ୍ୟ-ଶକ୍ତିର ଉଦ୍ଧାମତା ଓ ଦେଶ ବିଦେଶରେ ଏ ସବୁର ପ୍ରସାର ଇତ୍ୟାଦି ଏଠି ଉଲ୍ଲେଖ ପାଇଛି । ଓଡ଼ିଆର ମୌଳିକତାକୁ ଭିନ୍ନ-ମାଟିରେ ପ୍ରସାରିତ କରିବାରେ ସମୀରକୁ ସାରଥି କରାଯାଇଛି । ଯେଉଁ ସମୀର ପ୍ରଭଂଜନର ଶକ୍ତି ଘେନି କବି ଓ ବାଳକକୁଳଙ୍କର ସ୍ୱପ୍ନିଳ ସୌନ୍ଦର୍ଯ୍ୟ-ପ୍ରାପ୍ତି ଆଶାକୁ ବିଡମ୍ବିତ କରିଛି ସେହି ସମୀରଠାରେ କବି; ଉତ୍କଳୀୟ ସାଂସ୍କୃତିକ ବିଭବ ପ୍ରସାରଣର କ୍ଷମତା ଥିବା ଲକ୍ଷ୍ୟ କରିଛନ୍ତି । ଏପରି ଆଚରଣରେ କବି ଯେତିକି କାଳ୍ପନିକ ସେତିକି ଜାତୀୟ-ପ୍ରାଣ ।

ସ୍ୱପ୍ନବାଣୀ ଜରିଆରେ କୋଣାର୍କ ତଥା ଉତ୍କଳୀୟ ସଂସ୍କୃତିର ଗୌରବ ଯାହାର ଉଦନ୍ତ ଶଯ୍ୟାଗତ ବାଳକକୁଳଙ୍କୁ ଚେତେଇ ଦିଆଯାଇଛି ।[୨୫] ସେମାନେ କୋଣାର୍କର ଗଠନ, ତା'ପାଇଁ ଶ୍ରମ

---

୨୪ । କବିଙ୍କୁ ଫିଟାଇ ତରୁଣୀ ମଧୁଶଯ୍ୟା ବାସରେ
ରଣ କଣି ଆସି ବାଂଧିବ ବୋଲି ଗୁଡ଼ିବେ ବୀରେ ।
(କୋଣାର୍କେ—୯/୨୧୫-୨୧୬)

୨୫ । ଶୋଇଛତ ଏବେ ଶୁଣିବ, କେତେ ସ୍ୱପନବାଣୀ
କାଳଖଣ୍ଡ ସବୁ ଦେଖିବ ପ୍ରତିଶ୍ଳୋକେ ଉଜାଣି ।
(ତିନେିବ, ପଦ ୧୯୩-୧୯୪)

କ୍ଳାନ୍ତ ଶିବେଇ ସାମଂତ୍ରା ଓ ବାରଣ ଶିଳ୍ପୀ; ପୁଣି ଶେଷରେ ବଢ଼େଇ ବାଳକର ଆତ୍ମବଳି ଇତ୍ୟାଦି ଘଟଣାଟିକୁ ସ୍ୱପ୍ନରେ ଅନୁଭବ କରୁଥିବେ—ଏପରି ସମ୍ଭାବନାର କାବ୍ୟିକ ବାତାବରଣ କବି ସୃଷ୍ଟି କରିଛନ୍ତି ଏବଂ ବାଳକ ବଢ଼େଇର ପ୍ରାଣ-ଅର୍ପଣର ଘଟଣା ହୁଏତ ବାଳକଂକର ସ୍ୱପ୍ନ ଭଂଗ କରିବ ଓ ସେମାନେ ବାସ୍ତବତାକୁ ଫେରିଆସି ପୂର୍ବ ପୁରୁଷଂକୁ ତାଂକ କୀର୍ତ୍ତି ଭିତରେ ଅନୁଭବ କରିବେ; ଏଇ ସଂଭାବ୍ୟ ଅଭିଜ୍ଞାନ କବି ପୋଷଣ କରିଛନ୍ତି ।

ଦ୍ୱାଦଶ ଶ୍ଳୋକରେ ସ୍ୱପ୍ନ ଘେନି ତତ୍ତ୍ୱ ଚିନ୍ତା ଏବଂ ସ୍ୱପ୍ନର ଅଘଟନ ଘଟନ ପଟୁତା ନେଇ କବିଙ୍କର ଦୃଷ୍ଟିକୋଣ ପ୍ରକାଶ ପାଇଛି । 'ସ୍ୱପନେ ମିଶଇ ସ୍ୱପନ; ସ୍ୱପ୍ନ ସ୍ୱପନେ ଭାଂଗେ' ଏହାହିଁ ହେଉଛି କବିଙ୍କର ସ୍ୱପ୍ନ ଭିତ୍ତିକ ଦୃଷ୍ଟିକୋଣ । କବି ବୋଧରେ ସ୍ୱପ୍ନ କଳ୍ପନା-ଘଟିତ ନୁହେଁ, ସତ୍ୟ-ସିଦ୍ଧ । ବାସ୍ତବ ଭୂମିରେ ଯାହାର ଅସ୍ତିତ୍ୱ ନାହିଁ ବା ନଥିଲା ତାହା କଳ୍ପନା କିଂବା ସ୍ୱପ୍ନ ଚକ୍ଷୁରେ ସଂଦର୍ଶନ କରିବାର ଅବସର କବି ସୃଷ୍ଟି କରି ନାହାନ୍ତି । ଶିଶୁମାନଙ୍କର ସ୍ୱପ୍ନ ପଟରେ ଯାହା କିଛି ଉଦ୍‌ଭାସିତ ହେଉଥିବାର ସମ୍ଭାବନା କବି କରିଛନ୍ତି, ସେ ସବୁ କିଂବଦନ୍ତୀ, ଇତିହାସ, ପୁରାଣ ବା ସାହିତ୍ୟର ପରିଧି ଭିତରେ ଜୀବିତ ଥିଲେ ଏବଂ ଅଛନ୍ତି । ଏହି ସୂତ୍ରରେ ଚନ୍ଦ୍ରଭାଗା ନାୟିକାର ସ୍ମରଣ; ଜାହ୍ନବୀ, ଧୂମନ୍ୟୁ, ଶନି, ଉତ୍ପଳ ହରପାର୍ବତୀ, ସୂର୍ଯ୍ୟ ଇତ୍ୟାଦି ପୌରାଣିକ ଉପାଦାନ ତଥା ଚରିତ୍ରମାନଙ୍କର ଅବତାରଣା ସେମାନଙ୍କ ସହିତ ଗୃହିନ ବନ୍ଦର ଓ ଚନ୍ଦ୍ରଭାଗା କୂଳର ସଂପର୍କ ମଧ୍ୟ ସୂଚିତ ହୋଇଛି । ବାହାରର ଝଡ଼-ଝଂକାର ସଂଗେ ସ୍ୱପ୍ନରେ ଶୁଣୁଥିବା ରଣ ଝଂକାରର ମିଶ୍ରଣ ଘଟିଛି । ଏହା ଦ୍ୱାରା ସ୍ୱପ୍ନ ଓ ଐତିହାସିକ ବାସ୍ତବତାର ମିଶ୍ର ଯୋଗ ସ୍ଥାପିତ ହୋଇଛି ।

ରାଜଚ୍ଛତ୍ର ତଥା ଧର୍ମଧାରାର ଅଭ୍ୟୁଦୟ ସଂପର୍କୀୟ ସ୍ୱପ୍ନପାଠ ଏବଂ ଉତ୍କଳୀୟ ଗଜପତି ତଥା ସାମନ୍ତ ସେନାଙ୍କର ଜାତୀୟ ଅଖଣ୍ଡତା ପାଇଁ ପ୍ରଣୋଦ୍ୟମ ଇତ୍ୟାଦି ଇତିହାସ କଥା (ଶ୍ଳୋକ ୧୪—୨୯ ପର୍ଯ୍ୟନ୍ତ) କବି କ୍ରମରକ୍ଷା କରି ଉଲ୍ଲେଖ କରିଛନ୍ତି । କିଂବଦନ୍ତୀ ତଥା ଇତିହାସ ଆଧାରରେ ଉତ୍କଳରେ ଜଗନ୍ନାଥ ସଂସ୍କୃତିର ଅଭ୍ୟୁତ୍ଥାନ, ବୌଦ୍ଧ, ଜୈନ ଅନୁଶାସନ, ସେମାନଙ୍କ ଧର୍ମ ଗତିର ପ୍ରଭାବ ଓ ତା'ର ପ୍ରକାଶି, ବୈଦିକ ଧର୍ମର ପୁନଃ ପ୍ରତିଷ୍ଠା ଓ ଏହାର ପୁନଃ ପ୍ରତିଷ୍ଠା କାଳରେ ରକ୍ତବାହୁ ନାମକ ଜଣେ ବୌଦ୍ଧ ବା ଜୈନ ବରର ଓଡ଼ିଶା ଆକ୍ରମଣ କିଂତୁ ଚିଲିକା ଜଳରେ ତୋଫାନ ହେତୁ ତାର ଗର୍ବ କ୍ଷୟ ଇତ୍ୟାଦି ଉଲ୍ଲେଖ କରାଯାଇଛି । ଗୁପ୍ତ ବଂଶର ଅବସାନ ପରେ ଯଯାତିଙ୍କ ଶାସନ, କେଶରୀ ବଂଶର ପ୍ରସାର, ରାଧାନାଥଙ୍କ କାବ୍ୟରେ ଯଯାତିଙ୍କ ବ୍ୟକ୍ତିତ୍ୱରେ ବ୍ୟକ୍ତି-କଳ୍ପନା ଆରୋପଣ ଏବଂ କବିଙ୍କ କେଦାର-ଗୌରୀ, ନନ୍ଦିକେଶ୍ୱରୀ ପ୍ରଭୃତି ମାଳକଂଠଙ୍କର କାବ୍ୟିକ ଆକ୍ଷେପ ପ୍ରଭୃତି ଏଠି ବିବୃତ ହୋଇଛି ।[୨୬]

---

୨୬ । କବିଙ୍କ କେଦାରଗୌରୀ ଆସି ଯବନ ଦେଶୁ
ନାଶଯିବେ ଥିଲେ ସ୍ୱପନେ ତବ ଅଭ୍ୟାସ ବଶୁ
ସୁବର୍ଣ୍ଣ ଦୁହିତ ବରିବେ ଶୈର ଗଂଗ ରାଜନ
କେରଳ ମହଲେ ଉତ୍କଳ ଭେଷ ଶୁଭିବ ପୁଣ
ଘର ଗୁଡ଼ି କଂପା ମିବ ସେ ବୀରବାଳା ନନ୍ଦିକା
ସହକାର-ଦ୍ରୁମ-ତହଳେ ଭେଦି କ୍ଷୀଣ ଚଂଦ୍ରିକା ?
କଉସୁଲଗାଂଗ ଧଉଳ ଏହି ନୟନେ ନାଚେ
କବିଂକ ସୁମରି ବିରାଗେ ମୁଖ ଫେରାଅ ପଛେ ।

(କୋଣାର୍କେ—୧୫/୩୩୫–୩୪୨)

ସ୍ୱପ୍ନରେ ମଧ୍ୟ ବାରବାଟୀ ଦର୍ଶନ ସଂଘଟିତ ହୋଇଛି। ବାରବାଟୀର ନବତଳ ପ୍ରାସାଦ, ପରିଖା, ସେନା ଗୁଉଣୀ, ବଡ଼ାନାସୀ ଗଡ଼, ଓଡ଼ିଶା ଗଜପତିଙ୍କର ହାତୀ ଲାଂଛିତ କେତନ, ଶୌର୍ଯ୍ୟ-ସଙ୍କେତ ଏବଂ ଦୁର୍ଗବାସିନୀ ରମଣୀ ନକରଙ୍କର ବୀର-ଭାବ, ସେମାନଂକର ବୀର-ବଦାପୂ ମନୋଭଂଗୀ ଓ ତାଂଡ଼ବତ ଲାସ୍ୟ; ସର୍ବୋପରି ବାରବାଟୀର ଉତ୍ପତ୍ତି ଓ ରାଜଧାନୀ ସ୍ଥାପନର ଇତିହାସକୁ ଏଥିରେ ମୂର୍ତ୍ତିମନ୍ତ କରାଯାଇଛି।[୨୭] ଏହି କାବ୍ୟ ଛନ୍ଦଗୁଡ଼ିକରେ ମଧ୍ୟ ବାଳକକୁଳଂକୁ ସ୍ୱପ୍ନ ମାଧ୍ୟମରେ ଉତ୍କଳୀୟ ଐତିହ୍ୟର ପ୍ରତ୍ୟେକ ଘଟଣା ସହିତ ସଚେତନ କରାଇ ଦିଆଯାଇଛି। ଉତ୍କଳୀୟ କଳାର ମହାନତା, ଉତ୍କଳୀୟ ସାମରିକ ଜୀବନ, ଦେଶ ବିଜୟ, କୃଷକ ବାହିନୀର ଦୃପ୍ତ ସାହସ, ରାଜାଙ୍କର ଦେଶପ୍ରୀତି, ବଂଧି ମାନଂକର ଗୀତ ଜରିଆରେ ସାମଂତମାନଂକର ଯଶ କୀର୍ତ୍ତନ ଇତ୍ୟାଦିର ଆଲେଖ୍ୟ ଉତ୍କଳୀୟ ସାଂସ୍କୃତିକ ଇତିହାସର ଚିତ୍ର ପ୍ରତିଫଳିତ କରୁଛି।

## ରାମଚଂଡ଼ୀରେ ମୁଁ ପଡ଼ିଲି ବୁଝେ, କୋଣାର୍କ ଦଶା

କୋଣାର୍କର ଇତିହାସ (ଶ୍ଳୋକ ୨୯-୩୦), ସ୍ଥାପତ୍ୟ ସୂଚୀ (ଶ୍ଳୋକ ୩୧), ରାମଚଂଡ଼ୀଂକର ଆଗମନ ଓ ସ୍ଥାପନର କିଂବଦନ୍ତୀ

୨୭। ଅତୀତ ଗରବେ ମିଶାଇ ଦେବେ ଭବିଷ୍ୟ-ଯଶ
ଭୂଲୁ ବିସ୍ତାରଣେ ତୋଳିବେ ବୀରେ ଉନ୍ମାଦରସ।
× × ×
ବାରାଣସୀ ଚଉଦୁଆରୁ ଆଣି କାରିତ ମାଟି
ଅସି-ମୁନଗାରେ ତୋଳିଲେ ଭୀମ ଏ ବାରବାଟୀ।
(କୋଣାର୍କେ—୧୭/୩୮୫-୩୯୦)

( ଶ୍ଳୋକ ୩୩ ) ଏବଂ ଶ୍ଳୋକ ୩୪–୪୦ ମଧ୍ୟରେ କଳାପାହାଡ଼ର ଆକ୍ରମଣ ଫଳରେ ଦେବଦେବୀଂକର ଦେଉଳ ତ୍ୟାଗ, ଇତିହାସରେ ଗଢ଼ା କୋଣାର୍କର ପୁଣ୍ୟ ପୀଠରେ ସୂର୍ଯ୍ୟୋଦୟର ଚିତ୍ର ଦେଇ କବି ଗୁରୁବଗଣଂକୁ କୁଳଗୃହକୁ ଫେରାଇ ନେଇଛନ୍ତି । ଏବଂ ସୂଚନାରେ ମାୟାଦେବୀଂକର ଉଲ୍ଲେଖ କରିଛନ୍ତି ।

ମାୟାଦେବୀ ଅଂଶରେ କୋଣାର୍କ ଗଠନର କାବ୍ୟିକ ବାସ୍ତବତା ଓ ତତ୍ ସଂପର୍କୀୟ ରୋମାଂଟିକ କାହାଣୀ ପ୍ରଦତ୍ତ । ଗଡ଼ଜାତ ଭ୍ରମଣ ବେଳେ କୌଣସି ଭାଟ ମୁଖରୁ କବି ଯାହା ଶୁଣିଥିଲେ ତାହାର କାବ୍ୟରୂପ ହେଉଛି 'ମାୟାଦେବୀ' । ଏପରି ଜଣେ ଭାଟଠାରୁ ଶୁଣିଥିବା କଥାକୁ ନେଇ ଇଂରେଜ କବି ସ୍କଟ୍ 'The lays of the last ministrel' କାବ୍ୟ ରଚନା କରିଥିଲେ । କବି ମଧୁକଂଠ, ଏଥିପ୍ରତି ଅପରିଚିତ ନ ଥିଲେ । କାବ୍ୟଟିର ପ୍ରଥମ ସର୍ଗରେ ରାଜକୁମାର ନରସିଂହଂକର ବିବାହ ସମ୍ବନ୍ଧ ନେଇ ବିଶ୍ୱନାଥଙ୍କର କାଶ୍ମୀର ଯାତ୍ରା, ସେଠାରେ ସମ୍ବନ୍ଧ ସମାପନ, ତାଂକୁ ଅତିଥି ମାନ୍ୟ ଏବଂ ବିଶ୍ୱନାଥଂକର ମୁଖରେ ଉତ୍କଳର ବିଭବଶ୍ରୀ ବର୍ଣ୍ଣନା ଇତ୍ୟାଦି କଥିତ । ଦ୍ୱିତୀୟ ସର୍ଗରେ ବିଶ୍ୱନାଥଂକର ପ୍ରତ୍ୟାବର୍ତ୍ତନ, ରାଜପୁରରେ ସମ୍ବନ୍ଧ ସ୍ୱୀକୃତ, ନାରକେଳ ସହ ବାରବାଟୀ ଦୁର୍ଗରେ ତାଙ୍କର ସମ୍ବର୍ଦ୍ଧନା କଥା ବର୍ଣ୍ଣିତ । ପୁଣି ଅପର ପକ୍ଷରେ କାଶ୍ମୀରର ରାଜରାଣୀଂକର ବିବାହ ସମ୍ବନ୍ଧ ନେଇ ପାରିବାରିକ ସଂଳାପର ଚିତ୍ର ଏବଂ ରାଜଜେମାଂକର ମଧୁମୟ ସ୍ୱପ୍ନର ଛବିପଟ୍ଟ ଚିତ୍ରାଙ୍କିତ ହୋଇଛି । ବିଶ୍ୱନାଥ ଫେରିଲା ବେଳେ ଯେଉଁ ମାର୍ଗ ଦେଇ ଆସିଛନ୍ତି ସେମାନେ ଅତୀତ ଗୌରବ ଓ ବିଭବ ନେଇ ଭାରତୀୟ ଆତ୍ମାର ମହନୀୟତାକୁ କିପରି ଉତ୍ତୋଳିତ କରିଥିଲେ କବି ବର୍ଣ୍ଣନାରେ ତାହା ସ୍ପଷ୍ଟତର ହୋଇ ପ୍ରକାଶ ପାଇଛି ।

ରାଧାନାଥଙ୍କ ପରେ ରାଜସ୍ଥାନର ରୁକ୍ଷ ଦୃଶ୍ୟ ନୀଳକଂଠଙ୍କ ଦୃଷ୍ଟିକୁ ଚକିତ ବା ଆତଂକିତ କରି ନାହିଁ । ରାଧାନାଥଙ୍କର ରୋମାଣ୍ଟିକ ରୂପ-ପ୍ରାଣତାର ଦାୟାଦ ନ ହୋଇ ନୀଳକଂଠ ଇତିହାସ ଉପାସନାର ଯୂପ-ବେଦୀ ଏ' ସବୁ ସ୍ଥାନରେ ନିର୍ମାଣ କରିଛନ୍ତି । ବ୍ରହ୍ମାବର୍ତ୍ତର ଲୋହିତ-ଗିରିତଂଦା, ପଞ୍ଚନଦ, ତପୋଶ୍ରେଷ୍ଠ କ୍ଷେତ୍ର, ଇଂଦ୍ରପ୍ରସ୍ଥ, ଚଂବଳ, ଗ୍ୱାଲିଅର, ବେତ୍ରବତୀ କୂଳ, କୌଶାଂବୀ-କଟକ, କାଳିଂଜର-ନାଥ ଇତ୍ୟାଦି ପୌରାଣିକ ଓ ଇତିହାସ କୀର୍ତ୍ତି ସଂପନ୍ନ ଭାରତୀୟ ଭୂମି କବି-ଚେତନାକୁ ସ୍ପର୍ଶ କରିଛି । ଭୌଗୋଳିକ ଅଭିଜ୍ଞାନ ସହିତ ଐତିହ୍ୟ-ପିପାସାର କାବ୍ୟିକ ସମନ୍ୱୟ ଏଠି ସାଧିତ ହୋଇଛି । କବି ନୀଳକଂଠ ପୂର୍ଣ୍ଣତଃ ରାଧାନାଥ ପ୍ରବର୍ତ୍ତିତ ଊନବିଂଶ ଶତାବ୍ଦୀର କାବ୍ୟଧାରା ଠାରୁ ଏଠାରେ ବିଚ୍ଛିନ୍ନ ହୋଇ ନାହାନ୍ତି । ତୃତୀୟ ସର୍ଗରେ ଏକାମ୍ର କାନନରେ ବୀର ନରସିଂହଙ୍କ ସହିତ ସାମନ୍ତ-ସୁତା ମାୟାଦେବୀଙ୍କର ପ୍ରଥମ ମିଳନ ଘଟିଛି । ଏଇଠି ପୁଣି ନରସିଂହ ଦେବ ତସ୍କର ତାଡ଼ନରେ ବ୍ୟସ୍ତ ଥିଲାବେଳେ ଧଂକସ ଗଡ଼ର ଟଂକଙ୍କୁ ବନ୍ଦୀ ଅବସ୍ଥାରେ ଆପଣା ସମ୍ମୁଖରେ ଦେଖିଛନ୍ତି । ଦେଶରକ୍ଷା ଲାଗି ନରସିଂହଙ୍କୁ ଟଂକଙ୍କର କରୁଣ ଓ ପ୍ରାଣ ଉଚ୍ଛଳା ନିବେଦନ ଆବେଗର ମାର୍ମିକତା ବଂଶ ଦେଇଛି । ତସ୍କର ବୋଲି, ସାମଂତ ଦାୟାଦ ଧଂକସ ବୀର ଟଂକଙ୍କୁ ନରସିଂହ ସଂବୋଧନ କଲାପରେ ବୀର ଟଂକଙ୍କ ମନରେ ଯେଉଁ ପ୍ରତିକ୍ରିୟା ଦେଖା ଦେଇଛି ତାହା ବେଦନା ଓ ଅନାଦର ବ୍ୟଂଜନାରେ ଖୁବ୍ ତୀବ୍ର ।[୨୮]

---

୨୮ । ଶୀଭସ୍ର-ତସ୍କର ଅପଯଣ ଲବ୍ଧ ପରଧନେ କେଂପା ପିପାସା ତବ ?
ସ୍ୱଳ୍ପ-ନିଜ-ଧନେ ଗୃହକୋଣେ ପଡ଼ି ମରିବାଟି ସିନା ବୀର ବିଭବ !
କିଏ ସେ ତସ୍କର କୁମାର ଏ ଦେଶେ ପରଧନେ ବଳେ କାହାର ମତି ?
କାହାଧନ ଲୁଂଠି ରହିଛ ଏ ଭୂମେ ତୁମ୍ଭେପରି ଶ୍ୱେତ ଖଳ ସନ୍ତତି ?
(ମାୟାଦେବୀ, ପୃ ୩୬୩)

ପ୍ରତ୍ୟୁତ୍ତର ପଂକ୍ତିଚୟରେ ଓଡ଼ିଆଭିର ଅଭିମାନ ଖୁବ୍ ସ୍ପଷ୍ଟ ଏବଂ ଏହା ତାଙ୍କ ଉକ୍ତିରେ ମଧ୍ୟ ତୀକ୍ଷ୍ଣ । ଓଡ଼ିଆ ସାମନ୍ତର ଗର୍ବ ଓ ଅହଂକାରରେ ଏହାର ମର୍ମ ଅକ୍ଷର ଅଂକିତ । ପୁଣି ରାଜମାୟ୍ନ ବ୍ୟଙ୍ଗ ବୋଧର ତୀବ୍ର ଭାଷାରେ ଟଂକଙ୍କର ସଂଳାପ ରଚିତ । ଟଂକଙ୍କର ଉଜ୍ଜ୍ୱଳ ଜନ୍ମଭୂମି ପ୍ରତି ଯେଉଁ ମର୍ମ ଥିବା ଉକ୍ତି ପ୍ରକାଶ[29] ପାଇଛି, ତାହା ଦେଶାତ୍ମବୋଧର ପ୍ରାଣ ସ୍ପନ୍ଦନକୁ ଯେପରି ପ୍ରତିଫଳିତ କରିଛି ସେପରି ମଧ୍ୟ ଏକନିଷ୍ଠ ମାତୃ ମମତାର ଦୃଷ୍ଟାନ୍ତ ହୋଇଛି । ଜନନୀର ଗୌରବ ରକ୍ଷା ପାଇଁ ଆକୁଳ ଆକାଂକ୍ଷା ତୃପ୍ତିର ଫସଲ ନ ଦେଖୁଣୁ, ବୀରର ଭବିଷ୍ୟତ ବାସ୍ତବିକ ବିୟୋଗାନ୍ତକ ବ୍ୟର୍ଥତାର ସ୍ୱର ଧ୍ୱନିତ କରିଛି ।"

ଚତୁର୍ଥ ସର୍ଗରେ ନରସିଂହ ପାରିଧିରତ ଥାଇ ଶିଶୁପାଳ ଗଡ଼ ଜେମା ମାୟାଦେବୀଙ୍କ ସହିତ ତାଙ୍କର ଅନୁରାଗ ବିନିମୟ ହୋଇଛି । ବୀର ନରସିଂହ, ମାୟାଦେବୀଙ୍କ ଆତିଥ୍ୟ ବିଳାସରେ ଇନ୍ଦ୍ରିୟଜ ପୁଲକ ଓ ରୋମାଂଚ ଅନୁଭବ କରିଛନ୍ତି । ସେନାପତିଠୁଁ ସଂବାଦ ପାଇ ଟଂକ ଦମନ ପାଇଁ ଗଡ଼ରୁ ବିଦାୟ ନେଇଛନ୍ତି । ପଞ୍ଚମ ସର୍ଗରେ ଟଂକ ବିଜୟୀ ନରସିଂହଙ୍କ ସହିତ ମାୟାଦେବୀଙ୍କର

---

୨୯ । ଏହି ତ ଜଗତେ ଧର୍ମ ଚୂଡ଼ାମଣି
ବଳ ଅଛି ଯାର ନୁହେ ବସ ଚଳର
ଏହି ତ ତୁମ୍ଭର କ୍ଷତ୍ରିୟ କରମ
ଏଥିରେ ତ ତୁମ୍ଭେ ବୋଲାଅ ବୀର ।
(ମାୟାଦେବୀ—ପୃ ୩୬୪)

୩୦ । ଜନମି ଜନନୀ ବୋଲୁଥିଲି ତୋତେ
ରଖି ନ ପାରିଲି ଗରିମା ତବ
ଶତନଦୀ ଧାରେ ଲୋତକର ଧାରା
ଦେଖି ଯାଉଅଛି ଗୁଡ଼ ଏ ଭବ । (ତତ୍ରୈବ)

ଅଂଗସଂଗ ଲାଭ ସମ୍ଭବ ହୋଇଛି । ନରସିଂହ, ମାୟାଦେବଙ୍କୁ ଜଂବୁ-ଜେମାଙ୍କ ସହ ତାଙ୍କ ବିବାହ ସମ୍ବନ୍ଧ କଥା ଖୋଲି କହିଛନ୍ତି । ଏହି ଘଟଣାଟିର ଉନ୍ମୋଚନ ପରେ ମାୟାଦେବୀଙ୍କ ପ୍ରଣିପ୍ରିୟା-ବ୍ୟକ୍ତିତ୍ୱ ଆଦର୍ଶ ଓ ଈପ୍ସିତ ଅନୁଭବରେ ମନ୍ଥମାନ୍ଥିତ ହୋଇଛି । ଏହି ସର୍ଗରେ ପୁଣି ଜଂବୁ-ଜେମା, ମାୟାଦେବୀଙ୍କୁ ସଂଖୋଳିବା ପାଇଁ ଶିଶୁପାଳଗଡ଼ ଆସିଛନ୍ତି; ମାୟାଦେବୀ ତାଙ୍କଠାରେ ଜୀବନର ଅଭିଳାଷ ଓ ଦୈନ୍ୟ-ବୋଧକୁ ପ୍ରକାଶ କରିଛନ୍ତି । ସ୍ୱପ୍ନରେ ମାୟାଙ୍କୁ ମିଳିଥିବା ଶୂନ୍ୟ-ବାଣୀର ଦାରୁଣ କଥା ଏଇଠି ସେ ଜଂବୁ-ଜେମାଙ୍କୁ ଜଣେଇ ଦେଇଛନ୍ତି । 'ନ ଲଭିବ ଆର ଏ ରମଣୀ ତୁଂଭେ ଏ ଭବ ପୁରେ' ଏବଂ 'ଭବେ ନରସିଂହ ନ ଲଭିବେ ତବ ଚରଣ ସେବା'—ଏଇ ଶୂନ୍ୟ ବାଣୀର ସାରଉକ୍ତି ମାୟା-ନରସିଂହଙ୍କ ପାଇଁ ବାସ୍ତବରେ ଫଳିତ ହେବାର ଆଶଂକା; କାବ୍ୟକ କରୁଣତାକୁ ଶବଳିତ କରିଛି । ନାରୀର ମାନବୀ ବ୍ୟକ୍ତିତ୍ୱ ଅପେକ୍ଷା ଦେବୀ-ସତ୍ତାର ମୃଣ୍ମୟ ରୂପଟି ଏଠି ଅନ୍ତରତମ ଆବେଦନର ସହଗାମୀ ହୋଇଛି । ମାୟାଙ୍କର ଅନ୍ତିମ ଅଭିଳାଷ[୩୧] ର କାବ୍ୟ-ପ୍ରକାଶ କରୁଣତାର ଅଶ୍ରୁ ସମ୍ବେଦନ ଖେଳେଇ ଦେଇଛି ।

ଷଷ୍ଠ ସର୍ଗରେ, ତାମ୍ରଲିପ୍ତ ଜଳଦସ୍ୟୁ ଦମନରେ ବ୍ୟସ୍ତଥିବା ନରସିଂହ ଭୂର୍ଜପତ୍ର ଲେଖରୁ ମାୟାଙ୍କ ମୃତ୍ୟୁର ସଂବାଦ ଜାଣି ଶୁଣାନ୍ତିତ-ଆଶା-ଜର୍ଜର ବେଦନା-ବୋଧରେ ଅଭିଭୂତ ହୋଇ

୩୧ । ନ ପୂରି ବାସନା ଗଳିଯିବ ଯେବେ
ପରାଣ, ବରଜ ଏ ଭବ ପୁରେ
ସିଂଧୁକେ ପୁରାଇ ତପନେ ହସାଇ
ଲସାଇବ ପିଂଡ଼ ତଟିନୀ-ନୀରେ ।
(ମାୟାଦେବୀ—୫ମ ସର୍ଗ, ପୃ ୩୪୦)

ପଡ଼ିଛନ୍ତି । ତତ୍‌କ୍ଷଣାତ ଫେରିଆସି ମାୟାଦେବୀଙ୍କ ଅକ୍ରମ-ଅଭିଳାଷ ପରିପୂର୍ତ୍ତି ପାଇଁ ଉଦ୍ୟମ କରିଛନ୍ତି । ତାଙ୍କର ନିର୍ଦ୍ଦେଶ ଯୋଗୁଁ ମାୟାଦେବୀପୁରରେ ସୁନ୍ଦର ସୁରକ୍ଷା ପାଇଁ କୋଣାର୍କ ମନ୍ଦିର ନିର୍ମାଣ ସମ୍ଭବ ହୋଇଛି ।[୩୨]

ଉପସଂହାରରେ କବି, ମିଥ୍‌ର ଆଶ୍ରୟ ନେଇ ନରସିଂହ ମାୟା ସଂପର୍କରୁ କୋଣାର୍କ ନିର୍ମାଣ ଇତିହାସକୁ କାବ୍ୟିକ ସତ୍ୟ ବିଭୂତିରେ ସିଦ୍ଧ କରିବାର ରୋମାଣ୍ଟିକ କୌଶଳ ପ୍ରୟୋଗ କରିଛନ୍ତି । ଯେବେ ଯେବେ ସ୍ଵର୍ଗ ଦେବତାଗଣ ମାନବ-ଉଦ୍ଧାର କଲ୍ପ ନ୍ୟାୟରେ; ତପନ, ନରସିଂହ ରୂପେ, ସୂର୍ଯ୍ୟ ପତ୍ନୀ ଛାୟା ଓ ସଂଜ୍ଞା, ମାୟା ଓ ଜଂବୁନେମା ରୂପେ ମାନବ ଉଦ୍ଧାର କରିଥିବାର କାଳ୍ପନିକ କଥନିକା ଭିତ୍ତିରେ କାବ୍ୟଟିର ପରିଣତିକୁ ଲୋକ୍ ବିଶ୍ୱାସର ନିକଟବର୍ତ୍ତୀ କରିବାଲାଗି କବି ଚେଷ୍ଟା କରିଛନ୍ତି; ଭାଷାରେ ରାଧାନାଥ-ପ୍ରଯୁକ୍ତ କୌଶଳ ପରି ।

'କୋଣାର୍କେ' ପରି ଖାରବେଳ (୧୯୨୦) କବିଙ୍କର ମୌଳିକ କାବ୍ୟ-ରଚନା । କଳିଂଗ ସମ୍ରାଟ ଭଗବତ୍‌ଭକ୍ତ ଖାରବେଳଙ୍କ ଜୀବନର ଏକ ଶୌର୍ଯ୍ୟ-ସୁନ୍ଦର କାହାଣୀ ଏହି କାବ୍ୟର କଥାବସ୍ତୁ । ଅବଶ୍ୟ ଏପରି ଶୌର୍ଯ୍ୟ—ପ୍ରେମର ଅଙ୍କୁରୋଦ୍‌ଗମ ଅନ୍ତରାଳରେ ପରିସ୍ଥିତିର ଭୂମିକା ନଗଣ୍ୟ ନୁହେଁ । ଉତ୍କଳ, କଳିଂଗ ଏବଂ ଉଡ୍ର ଦେଶର ଯୁବରାଜ ଖାରବେଳ,

୩୨ । ଶିବେଇ ସାମନ୍ତ ନିକଟ ଲଭିଲେ
କୁଶଳ ସ୍ଥପତି ଆସିଲେ ଖରେ
ମାୟାଦେବୀ ପୁରେ ମୂଳକରି ଶୁଭ
ତୋଳିଲେ କୋଣାର୍କ ଚଟିମା ଜଳେ ।
(ମାୟାଦେବୀ—ଷଷ୍ଠ ସର୍ଗ, ପୃ ୪୦୪)

ଆପଣା ଦେଶର ବଣିକ କୁଳ ସିଂଧୁ ଦେଶର ପଶ୍ଚିମ ଉପକୂଳବର୍ତ୍ତୀ ଅଂଚଳମାନଙ୍କରେ ନଗରପଦରେ ବାଣିଜ୍ୟ କରି ପାରୁ ନ ଥିବା ଜାଣି, ବା ସେମାନେ ବାଣିଜ୍ୟ ବ୍ୟବସାୟରେ ପୀଡ଼ା ପାଉଥିବା ଅବଗତ ହୋଇ, ସେମାନଙ୍କ ହିତ ପାଇଁ ଅପରନ୍ତୁ ଜାତୀୟ ଜୀବନର ହିତ ନିମନ୍ତେ, ସିଂଧୁ ଦେଶ ଆଡ଼କୁ ଯୁଦ୍ଧ ଯାତ୍ରାର ଆୟୋଜନ କରିଥିଲେ । ସେତେବେଳକୁ ଡ଼ମେଟ୍ରିୟସ ବା ଦତ୍ତିମ ନାମକ ଜଣେ ପରାକ୍ରମଶାଳୀ ରାଜା ସିଂଧୁ ଦେଶର ଦୁଇଟି ପଡ଼ୋଶୀ ରାଜ୍ୟ ବଜିର ଓ ପୂର୍ବ ଭୂମିକୁ କୂଟ ଯୁଦ୍ଧରେ ଅଧିକାର କରି ଏ ସବୁ ଅଂଚଳରେ ବିଦେଶୀ ବଣିକମାନଙ୍କର ପ୍ରବେଶ ପାଇଁ ଟାଂଗ୍ଣ ନେଇଥିଲେ । ସିଂଧୁ ଦେଶର ପଶ୍ଚିମକୁ ଯେଉଁ ରାଜ୍ୟ ଥିଲା, ଦ୍ରାବଡ଼ କୃଷକ ଗଣ ତାହାର ଅଧିବାସୀ ଥିଲେ ଏବଂ ବଜିର କନ୍ୟା ଧୂସିଙ୍କୁ ଏଇ ଦେଶର କୃଷକ-ପତି ଆଦର କରି ପାଳିବାକୁ ନେଇ ଆସିଥିଲେ । ଦିଗ୍‌ବିଜୟୀ ଖାରବେଳ ଦତ୍ତିମଙ୍କ ବିରୋଧରେ ଅଭିଯାନ କରି ପ୍ରଥମେ ସିଂଧୁ ଦେଶର ପଟ୍ଟଳ ନଗରୀରେ ଗ୍ରାଉଣୀ କରି ରହିଲେ ଏବଂ କୃଷକ-ସେନାଙ୍କୁ ସାଥି ରୂପେ ପାଇ ଦତ୍ତିମଂକ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ, କୃଷକ ସେନାକୁ ଧୂସି ପୁରୁଷ ବେଶରେ ନେତୃତ୍ୱ ଦେଲେ ।

ପୂର୍ବରୁ ଖାରବେଳ ଗୋଟିଏ ନଦୀ କୂଳରେ କୃଷକ ବାଳିକାଙ୍କ ଗହଣରେ ଧୂସିଙ୍କୁ ଦେଖିବାର ସୁଯୋଗ ପାଇଥିଲେ ମାତ୍ର ପରିଚୟ ହୋଇ ନ ଥିଲା । ଯୁଦ୍ଧ ବେଳେ ଛଦ୍ମ ବେଶୀ ସେନାପତି ଧୂସିଙ୍କ ସହିତ ଯୁବରାଜ ଖାରବେଳଂକର ଆତ୍ମୀୟତା ବର୍ଦ୍ଧିତ ହେଲା । ଦତ୍ତିମ ପରାସ୍ତ ହେଲେ, ଖାରବେଳ ଆହତ ହୋଇ ପଡ଼ିଥିଲେ । ସୁସ୍ଥ ହୋଇ ପଟ୍ଟଳକୁ ଫେରି ଧୂସିଙ୍କୁ ଚିହ୍ନିଲେ, ତାଂକ ମନରେ ଆଗରୁ ଜନ୍ମିଥିବା କୃଷକ-ବାଳିକା ପ୍ରତି ପ୍ରଣୟ, ପରିଣୟରେ ପରିଣତ ହେଲା । ଏହାହିଁ ହେଉଛି କାବ୍ୟଟିର ଥିମ୍ ବା ବିଷୟାଂଶ ।

ଭବ ଇତିହାସରୁ ଏଇ ବିଷୟଟିକୁ ସଂଗ୍ରହ କରିଛନ୍ତି । ଏପରି ବିଷୟ-ନିର୍ବାଚନର ନିହିତ ଉଦ୍ଦେଶ୍ୟ ପରୋକ୍ଷଭାବେ, କାବ୍ୟଟିର 'ନମସ୍କ୍ରିୟା' ଅଂଶରେ ପ୍ରକାଶ ପାଇଛି । କାଳ-ଚକ୍ରରେ ପ୍ରବର୍ତ୍ତିତ ଯୁଗ-ଦର୍ଶନ ମଣିଷ ଯେମିତି ସାଇତିରଖେ, ପୂର୍ବଜ ବା ପରଂପରାର ପଦଚିହ୍ନ ଖୁଣ୍ଟିବା ପାଇଁ, ଯେମିତ ବା ବିଜ୍ଞାନୀ ପୃଥିବୀର ଭୌତିକ ନିବନ୍ଧକେନ୍ଦ୍ରଟିକୁ କଳନାକରେ ହେତୁ ଖୋଜିବାର ମନନେଇ କିଂବା ଇଂଦ୍ରିୟର ସଂନ୍ଧଦ୍ୱାରରେ ଉନ୍ମୋଚନ ଓ ଉଚ୍ଚାରଣର ବିଚିତ୍ର ରାଗିଣୀ ମଣିଷର ଅନ୍ତରାତ୍ମାରେ ଯେମିତି କାଳେ କାଳେ ସମ୍ମୋହନର ସିତ୍କାର ଖେଳାଇ ଚାଲିଥାଏ; ସେମିତି ଇତିହାସ ବିଏ ମଣିଷକୁ ଆତ୍ମ ପ୍ରସାରଣର ବିଭୂତି । ଏଇ ଆତ୍ମ ପ୍ରସାରଣର ଜାଗ୍ରତ ଉଦ୍‌ବୋଧନ ପାଇଁ ସମ୍ଭବତଃ ଏପରି ଏକ କାବ୍ୟର ପରିକଳ୍ପନା ।[୩୩]

କାବ୍ୟଟିରେ ଶୌର୍ଯ୍ୟ-ପ୍ରେମର ଗୌରବ କୀର୍ତ୍ତିତ ହୋଇଛି । ସ୍ୱଦେଶ ଅନୁରାଗର ଭୂମିକା ଉପରେ ଏହାର ବିଚିତ୍ର ଆଭା ଉକୁଟି ଉଠିଛି । ଖାରବେଳ ଏକ ଜାତୀୟ ଆତ୍ମା, ତାହାଁରେ ପ୍ରଣୟର ପବିତ୍ରତା ଅଛି, ଅଛି ପୁଣି ଦେଶ ନିଷ୍ଠାର ଗାମ୍ଭୀର୍ଯ୍ୟ । ଏ ଜାତିର

---

୩୩ । ବହିଯାଏ କାଳଚକ୍ରେ ଯୁଗ-ପରଂପରା
ମାନବ ତା' ଲେଖୁଥି ଶରବେ .
ଅଚଳ ଭୂଧର କେତେ ଉଠେ ପଡ଼େ ନିତି
ବିଜ୍ଞାନ ତା' ଗଣୁଚି ବିଭବେ ।
ଇଂଦ୍ରିୟ ଦୁଆରେ ମନେ ବାଣୀ ବିଦ୍ୟୋତନ
ଅନଂତ କ ବିରଚେ ରହସ୍ୟ
ପରଂପରା ଗଣି ନର ଆତ୍ମ ପ୍ରସାରଣେ
କରଧାରେ ପଡେ ଇତିହାସ ।
(ଖାରବେଳ—ନମସ୍କ୍ରିୟା ପୃ ୪୭୧)

୩୦ ।

ଛାବ-ସମୁଦ୍ରରେ ତାହାର ପ୍ରସାରଣ ପାଇଁ କବି-ମନ ସତେ ଯେପରି ଉଚ୍ଛଳ ହୋଇଉଠିଛି ।

ସୁତରାଂ କାବ୍ୟର ଅର୍ଥ, ବା ବିଷୟ ସତ୍ତାର ଅନୁଶୀଳନରୁ ଜଣାଯାଉଛି ଯେ କବି, ଐତିହ୍ୟ-ବୋଧ ଓ ସାମାଜିକ ଶାଳୀନତାରେ ନିବଦ୍ଧିତ ଆଦର୍ଶ ପ୍ରଣୟ-ଜୀବନର ଚିତ୍ତଉଲ୍ଲାସକର ଅନୁଭବ, ପ୍ରତିଦିନରେ ସଂଗୃହ କରିବାଲାଗି ପ୍ରୟାସୀ ହୋଇଛନ୍ତି । କିନ୍ତୁ ଏଇ ମୃତ୍ୟୁ-କବି-ଆକର୍ଷଣର ସ୍ୱର ଓ ସ୍ୱରୂପ କଣ ଏବଂ ଏଥିସହିତ ଅନ୍ୟ କେଉଁ ଅନୁଭବର ଅନ୍ତର ସଂଯୁକ୍ତ ହୋଇଛି; ତାହା କବିଙ୍କର କାବ୍ୟ-ଚେତନା ପରିଚର୍ଯ୍ୟାରୁ ସ୍ପଷ୍ଟ ହେବ ।

## କାବ୍ୟଚେତନା ଅନ୍ୱେଷଣ : ପ୍ରଣୟଚେତନା

କବିଙ୍କର ପ୍ରଥମ କବିତା 'ଆଦର୍ଶ-ତାରା' ରେ ବର୍ଣ୍ଣିତ ପ୍ରଣୟ-ବୋଧ ଯେଉଁ ଧର୍ମ ଓ ଧାରାର ସୂଚକ, ପରବର୍ତ୍ତୀ କାଳର ସୃଷ୍ଟି ଏଥିରେ କିଛି ପରିବର୍ତ୍ତନ ଆଣିଥିବା ମନେହୁଏ ନାହିଁ । କବି, ଯୌବନର ଉଚ୍ଛଳତା ଓ ଉଦ୍‌ବେଳତାକୁ ସ୍ମୃତିର ଚଂଚଳ ଘଡ଼ି ଭିତରେ ଧାପ ଦାଣ୍ଡି ମାପରେ ଜୀବନ ପାଇଁ ମାପିବାର ପକ୍ଷ କରିନାହାନ୍ତି । ବରଂ ସକଳ ମାନବିକ ସ୍ଖଳନର ଊର୍ଦ୍ଧ୍ୱରେ ଥାଇ, ପ୍ରଣୟ ଚେତନା, କବି-ଅନୁଭବରେ ଶ୍ମଶାନ ତୁଳସୀ ପରି ଶୁଦ୍ଧ ଓ କଳୁଷ-ଶୂନ୍ୟ ହୋଇଛି । ଏଇ ଆଦର୍ଶର ଅଖଣ୍ଡତା କବି-ମନର ଅଭିବୃଦ୍ଧିର ପ୍ରତିଟି ସୋପାନରେ ଲକ୍ଷ୍ୟ କରିହୁଏ ।

କବିଙ୍କର ଅଭିବ୍ୟକ୍ତିରୁ ସ୍ପଷ୍ଟ ଯେ ପ୍ରଣୟ ବା ଶୃଂଗାରିକ ଚେତନା ଦେହଜ କାମନା-ବୃତ୍ତ ଭିତରେ ସୀମାବଦ୍ଧ ନ ହୋଇ

ଜାଗ୍ରତ ବା ସାମରିକ ଇଚ୍ଛାରେ ରୂପାନ୍ତରିତ ହୋଇଛି । ଅର୍ଥାତ୍ ପ୍ରଣୟ କାମନାଟି ଜାଗ୍ରତ ବା ଶୌର୍ଯ୍ୟ କାମନାରେ ପରିଣତ ହୋଇଛି ।[୩୪]

କବି ପ୍ରୀତି-ଶକ୍ତି ସଂକ୍ରାନ୍ତରେ ସଚେତନ । ତାଙ୍କ ଦୃଷ୍ଟିରେ ଖର ସ୍ରୋତଠାରୁ ବଳି ପ୍ରୀତିର ଶକ୍ତି ଏବଂ ପ୍ରୀତିର ସ୍ରୋତରେ ସଉଧ ଓ କୁଟୀର ସମସ୍ତେ ଏକାକାର । ତରୁଣ-ତରୁଣୀଙ୍କ ପରାଣ ହେଉଛି ପୀରତିର ଅନଂତ ସୁଖାଳୟ । ସୁତରାଂ ପ୍ରୀତିବୋଧରେ ଅନନ୍ତ ଶକ୍ତିର ଚିହ୍ନ କବି ଲକ୍ଷ୍ୟ କରିଛନ୍ତି ( ମାୟାଦେବୀ—୩ୟ ସର୍ଗ ୮୩/୯୫ ପଂକ୍ତି ) କବି ଦୃଷ୍ଟିରେ, ଯୌବନ, ପ୍ରୀତିର ଗୋଟିଏ ରସଧାର । ଜୀବନେ ଜୀବନର ମିଳନରେ ଅନଂତ ସୁଖର ପ୍ରାପ୍ତି ।[୩୫] ଅୟସ୍କାଂତ ମେରୁକୁ ଗୁମ୍ଫିଲା ପରି କିଂବା ଚୁଂବକ ଲୁହାର ଆକରଷଣ ଲୋଡ଼ିଲା ପରି ତରୁଣ ଲୋଡ଼େ ପ୍ରାଣର ମିଳନ । ପରସ ପରଶରେ ଅନନ୍ତ ପ୍ରୀତିର ବିକାଶ ଦେଖାଯାଏ; ଯେମିତି ସରସ ତଟିନୀ ଗିରିଦରୀ ଛାଡ଼ି ସାଗର ଛାତିରେ ଭାସି ଉଠେ ।[୩୬]

---

୩୪ । କବଚ ପିନ୍ଧାଇ ତରୁଣୀ ମଧୁରସ୍ୟ ଭାଷରେ
'ରଣଜିଣି ଆସି ବାଂଧିବ' ବୋଲି ଗୁଡ଼ିବେ ଖଟଣ
(କୋଣାର୍କେ—ଶ୍ଲୋକ ୯/୨୧୫)

୩୫ । ଜୀବନେ ଜୀବନ ମିଶି, ଯଉବନ
ବହଇ ଅନଂତ ପୀରତି ଧାରେ ।
(ମାୟାଦେବୀ—୪ର୍ଥ ସର୍ଗ, ୬)

୩୬ । ଚୁଂବକ-ଶକତି ପରଶେ ପଲକେ
ଲୋହେ ବିକାଶଇ ଚୁଂବକ ବଳ
ଅୟସ୍କାଂତ ଯଥା ଗୁହେ ମେରୁ ତଟକ
ତରୁଣ-ଲୋଡ଼ିଲ ପରଶ ମେନ ।
(ମାୟାଦେବୀ—୪ର୍ଥ ସର୍ଗ, ୧୧-୧୨ ପଂକ୍ତି)

୩୭ ।

ପୁଣି କବି-ଅନୁଭବରେ ପ୍ରୀତି ସର୍ବମୟ । ଆକାଶ-ମେଦିନୀ ସର୍ବତ୍ର ଏହା ପ୍ରସାରିତ । ଏହାର ଭୂମିକା ଶୌର୍ଯ୍ୟ-ଶକ୍ତିରେ ଚିହ୍ନିତ; ଭାବ ବା ତରଳ ଆବେଗର ଅକ୍ଷରରେ ଏହା ଅଳଂକୃତ ନୁହେଁ । ତେଣୁ ସେ ପ୍ରୀତି-ସୋହାଗରେ ବୀରତ୍ୱର ବ୍ୟଂଜନାହିଁ ଅନୁଭବ କରିଛନ୍ତି ।[୩୭] ଏଇ ପ୍ରୀତି ଦୀପ୍ତ ଉନ୍ମାଦନା ହେଉଛି ସମରରେ ଅଗ୍ରଗତିର ହେତୁ ପୁଣି ରମଣୀ-ମୋହନର ହେତୁ । ଅତଏବ କବିଙ୍କର ପ୍ରୀତି-ଚେତନା ହୋଇଛି ଶୌର୍ଯ୍ୟ ଓ ଶ୍ରୀର ସ୍ମାରକୀ ।[୩୮] ସେହି ଦୃଷ୍ଟିରୁ ବୀର ନରସିଂହ କେବଳ ଦେହବାଦୀ ପ୍ରୀତି-ବୋଧର ନାୟକ ହୋଇ ନାହାଁନ୍ତି, କଠୋର କର୍ମ ଓ ଶୌର୍ଯ୍ୟ ପ୍ରେମର ପ୍ରତୀକ ଚରିତ୍ର ରୂପେ ଚିତ୍ରିତ ହୋଇଛନ୍ତି ।[୩୯] ଏତଦ୍‌ଭିନ୍ନ କବି, ମାୟାଦେବୀ କାବ୍ୟର ଚତୁର୍ଥ ସର୍ଗରେ 'ପ୍ରେମ ବୀଣା' ର ପ୍ରଭାବଶାଳୀ ସ୍ପର୍ଶର ଏକ ଦାର୍ଶନିକ ଅନୁଶୀଳନ କରି ତାହାର ଅନଂତ ଆଦର୍ଶକୁ ମଧ୍ୟ ପରିସ୍ଫୁଟିତ କରିଛନ୍ତି ।

---

୩୭ । ପୀରତି ସୋହାଗେ ନାହିଁକି ବୀରତ୍ୱ ?
ନ ପଡ଼େ କି ବଧୂ ଶିଖର ଶିଖେ ?
(ମାୟାଦେବୀ—୪ ର୍ଥ ସର୍ଗ, ୭୭ ପଂକ୍ତି)

୩୮ । ପୀରତିରେ ଝଳ ଦୀପ୍ତ କରବାଳ
ପଡ଼ଇ ସମରେ ଅରାତି ପରେ
ସେହି ପୀରତିରେ ମୃଣାଳ ମୋହନ
ବୀର-ବାହୁ-ପାଶ ରମଣୀ ଧରେ ।
(ମାୟାଦେବୀ—୪ର୍ଥ ସର୍ଗ, ୨୧-୨୨)

୩୯ । ବୀର-ନରସିଂହ ତରୁଣ ପରାଣେ
ବହୁଅଛି ସେହି ପୀରତି ପରା !
କରମ କଠୋର-ଉରସ ଉପରେ
ଫିଟିଛି କମଳ ପୀରତି ଧାରା ।
(ତତ୍ରୈବ, ୨୩-୨୪ ପଂକ୍ତି)

ପ୍ରୀତି-ପ୍ରତିମା ନାରୀ, କବି ଦୃଷ୍ଟିରେ ଆର୍ଯ୍ୟ ସଂସ୍କାର, ଶିଷ୍ଟାଚାର ଓ ଶାଳୀନତାର ଏକ କାନ୍ତ ରୂପ ବୋଲି ପରିଗଣିତ। ପାରିଧି ବେଳେ ମାୟା-ନରସିଂହ ମିଳନରେ ଏଇ ଦୃଷ୍ଟିଭଂଗୀ ପ୍ରତିଫଳିତ।

କବି ପ୍ରୀତି-କଳ୍ପ (Love Imagery) ରଚନାରେ ଶାଶ୍ୱତ ମୂଲ୍ୟ ଥିବା ବସ୍ତୁ ପ୍ରତି ବିଶେଷ ଧ୍ୟାନ ଦେଇଛନ୍ତି। କାରଣ ତାଂକ ଦୃଷ୍ଟିରେ ପ୍ରୀତି ଶାଶ୍ୱତ, ମୃଣ୍ମୟ ନୁହେଁ। ତେଣୁ ତାଙ୍କ ଆଖିରେ ପ୍ରୀତି, ତାରକା, ପ୍ରୀତି, ଜୋଛନା, ପ୍ରୀତି, ତପନ, ଏବଂ ଧ୍ରୁବତାରା। କବିଙ୍କର କାବ୍ୟ-ନାୟକ ନରସିଂହ ବା ଖାରବେଳ, ଯେଉଁ ପ୍ରୀତିରେ ନିମଜ୍ଜି ଯାଇଛନ୍ତି ତାହା ହେଉଛି ସେହି ଶାଶ୍ୱତ ପ୍ରୀତି।[୪୦]

କବି-ଅନୁଭୂତି ସ୍ୱୀକାର କରିଛି ଯେ ସକଳ ବ୍ୟର୍ଥତା, ବିଷାଦ ଓ ବିରହଯୋଗ ଭିତରେ ପ୍ରଣୟ ହିଁ ଜୀବଂତ ଓ ଦୀପ୍ତିମଂତ।[୪୧] କବି-ମନନରେ ପ୍ରୀତି ହେଉଛି, ଶ୍ୟାମ ଓ କାଂତ। ବିଚିତ୍ର ଏହାର ଲୀଳା, ଅଦ୍‌ଭୂତ ଏହାର ଗତି। ପ୍ରୀତିର ବୈଚିତ୍ର୍ୟ-ବୋଧରେ କବି ବିସ୍ମୟ-ବିମୂଢ଼। ଏହା ରୋମାଣ୍ଟିକ ବିସ୍ମୟ-

୪୦। ସେହି ପୀରତିରେ ବୁଡ଼ିଗଲେ ବୀର
ପାରିଧି ବିସୋରି ସେ ଶିଶୁପାଳେ।
(ମାୟାଦେବୀ—୫ମ ସର୍ଗ, ୨୦ ପଂକ୍ତି)

୪୧। ଜୀବଂତ ସ୍ମରଣେ ଆଶାର ଶ୍ମଶାନେ
ଜୀବଂତ ଦିଶଇ ପ୍ରଣୟ ଲେଖା
ଅନଂତ ପିପାସା ପ୍ରଣୟି-ପରାଣେ
ନିରାଶା କି ଦେଇପାରଇ ଦେଖା ?
(ମାୟାଦେବୀ—ଷଷ୍ଠ ସର୍ଗ, ୧୭।୧୮ ପଂକ୍ତି)

ସାବୃଳତାର ଏକ ମାନସିକ ପ୍ରକାଶ ।[୪୨] କବି ଦୃଷ୍ଟିରେ ପ୍ରୀତି କୁମାରୀ ରମଣୀର ବ୍ୟକ୍ତିତ୍ୱ କେବଳ ମାନବୀ ସତ୍ତାରେ ଭୂଷିତ ନୁହେଁ, ସେ ଦେବୀ ପୁଣି ଶକ୍ତିମୟୀ ଭୁବନେଶ୍ୱରୀ ।[୪୩] ତେଣୁ ତା’ ତନୁରେ ପ୍ରୀତିର ଖେଳା ଅତି ବିଚିତ୍ର । ଅନୁରାଗର ସଂଗ୍ରର ମଧ୍ୟ ଭିନ୍ନ । କବି ଅନୁଭବ କରନ୍ତି, ଅନୁରାଗର ଉତ୍ତରଣରେ ପ୍ରୀତି ହସେ ଉତ୍ତରଜମାନଙ୍କ ଯଶରେ କୀର୍ତ୍ତି ହସି ଉଠିଲା ପରି ।

ସୁତରାଂ କବି ନୀଳକଣ୍ଠଙ୍କ ପ୍ରଣୟ ଚେତନା ଆଦର୍ଶର ଆଧାର ଭୂମି ଉପରେ ପ୍ରତିଷ୍ଠିତ । ତ୍ୟାଗ ଓ ସଂଯମର ମହିମାରେ ବିମଣ୍ଡିତ । ଏଠି ଇନ୍ଦ୍ରିୟବଳ ଅଣଆୟତ୍ତ ହୋଇ ରହିନାହିଁ,

---

୪୨ । କ) ବିଚିତ୍ର ପୀରତି ଲୀଳା କାହାର ଏ ଭିଆଣ ?
(ଖାରବେଳ—୯ମ ଛନ୍ଦ)

ଖ) ଶ୍ୟାମ କାନ୍ତ ଏ ପୀରତି, ଅଦ୍ଭୁତ ଏହାର ଗତି
କେ ଗାଇବ ସେ ପୀରତି ଚିତ୍ର ବିଧାନ ?
(ଖାରବେଳ—୧୬ଶ ଛନ୍ଦ)

ଗ) ଆହା ସେ ପୀରତି କି ବିଚିତ୍ର ରସ
ଜଗତ ମୁକୁରେ ଦେଖଇ ମୁଖ
ତାମସେ ତପନେ ଜଳେ ସ୍ଥଳେ ନଭେ
ଝଲଇ ପୀରତି ସ୍ୱପନ ମୁଖ ।
(ଖାରବେଳ—୨୫ଶ ଛନ୍ଦ)

୪୩ । ରମଣୀ ରହସ୍ୟ ଭବେ ବିଷମ ବଡ଼
ସୁକୁମାରୀ ରମଣୀର ଅସୀମ ବଳ
କାଳୀ, ଚଣ୍ଡୀ ସେହି, ସେହି ଭୁବନେଶ୍ୱରୀ
ଗିରୀଶ ସଂଯମନାଶୀ ସେହି ଗଉରୀ ।
(ଖାରବେଳ—୪ର୍ଥ ଛନ୍ଦ)

ବ୍ୟକ୍ତି, ରୂପଜ ତୃଷ୍ଣାର ପ୍ରବଳତା ନିକଟରେ ଆତ୍ମ ସମର୍ପଣ କରି ନାହାଁନ୍ତି ବରଂ ବ୍ୟକ୍ତିତ୍ୱର ଗୌରବ ଘେନି କାମନାକୁ ପ୍ରାଣରେ ସ୍ଥାନ ଦେଇଛନ୍ତି । ଖାରବେଳ ବା ନରସିଂହ ଏବଂ ମାଯ୍ରା କିଂବା ଧୂପି; ସମସ୍ତେ ଏଇ ଚେତନାର ସ୍ପଷ୍ଟରୂପ । ତେଣୁ ନୀଳକଂଠଙ୍କ ପ୍ରଣୟ-ବୋଧରେ ରୂପାତୁରତା ପ୍ରଶସ୍ତ କ୍ଷେତ୍ର ଲାଭକରି ନାହିଁ । ପ୍ରଣୟ-ଚର୍ଚ୍ଚାରେ ବୈଚିତ୍ର୍ୟର ଅଭାବ ଅଛି; ବିପୁଳ ବିନ୍ୟାସ ନାହିଁ । କବି ହୋଇଛନ୍ତି ବୈଚିତ୍ର୍ୟ ସଂଜ୍ଞାମ, ମଧ୍ୟଯୁଗ କବିକୁଳଙ୍କ ପରି ଏକାଭଳି ପ୍ରଣୟର ଆଲେଖ୍ୟ ଫୁଟାଇ ନାହାଁନ୍ତି ।

## ସୌନ୍ଦର୍ଯ୍ୟଦୃଷ୍ଟି ରୂପବିଳାସ

ନୀଳକଂଠ ରୂପାନ୍ୱେଷୀ କବି ନୁହନ୍ତି, ଭାବାନ୍ୱେଷୀ । ରୂପର ଚିନ୍ମୟ ପ୍ରସାରରେ ସେ ପ୍ରଲୁବ୍ଧ ହୋଇ ନାହାନ୍ତି, କିଂବା ରୂପଦକ୍ଷ ହୋଇ ରୂପର ଅନୁଗମନ କରିବାରେ ଆଗ୍ରହ ଦେଖାଇ ନାହାଁନ୍ତି । 'କୋଣାର୍କେ'ରେ ରାଜା-ରଜନୀର ଜ୍ୟୋତ୍ସ୍ନାବିସାର ପାଇଁ ଆକୁଳ ଆତୁରତା ପ୍ରକାଶ କରିଥିଲେ ମଧ୍ୟ ତାହା କବିଙ୍କ ରୂପ-ତୃଷାର ପ୍ରତିପାଦକ ନୁହେଁ ବରଂ ତାହାର ଅନ୍ତସ୍ଥଳରେ କୋଣାର୍କକୁ ମୂଳକରି ଜାତୀୟ ଐତିହ୍ୟର ମହାନ କଳା-ଛବି ଅନୁଶୀଳନ କରିବାର ତତ୍ତ୍ୱାନ୍ୱେଷୀ ପ୍ରବୃତ୍ତି ନିହିତ । 'ଗ୍ରାମଚଂଡ଼ୀଠାରେ ରାତି' ଅଂଶରେ ବାଆ ବତାସି ପ୍ରତି କବିଙ୍କର ଆତ୍ମିକ ସଂବୋଧନ ଏବଂ ମୋହ ନିମରେ କୁଆଁର-ପୂନଅ ରାତିର ଶୋଭାମୟୀ ପ୍ରକୃତିର ଧରାବତରଣ ପାଇଁ ଯେଉଁ ବ୍ୟାକୁଳ ଉଦ୍‌ବେଗ ପ୍ରକାଶିତ ତାହା ମଧ୍ୟ ଦୃଶ୍ୟମାନ ପ୍ରକୃତିର ଆଲେଖ୍ୟ ନୁହେଁ, କଳ୍ପନାରେ ଅବଧାରିତ ଏକ ବର୍ଣ୍ଣାଢ଼୍ୟ ନକ୍‌ସା । କିଂତୁ ଏଥିରେ କବିଙ୍କର ସୁଷମା-ବିଳାସୀ ମନର ସ୍ଫୁରଣ-ଚିହ୍ନ ନିହିତ ଏବଂ ରୋମାଣ୍ଟିକ

ସୌନ୍ଦର୍ଯ୍ୟ-ଜିଜ୍ଞାସାର ଉଚ୍ଚାରଣ ସ୍ପଷ୍ଟ । ତଥାପି ଏହା ବାହ୍ୟ ଆମୋଦରେ ମନକୁ ବଶ କରେ ସିନା ଅନ୍ତରକୁ ଉଲ୍ଲସିତ କରିପାରେ ନାହିଁ । ସେହିପରି କୋଣାର୍କେ ଉଦୟ-ବିଭବର ବର୍ଣ୍ଣନା (ଶ୍ଳୋକ ୩୮-୩୯) । ବର୍ଣ୍ଣନାରେ ସୂକ୍ଷ୍ମ ଦର୍ଶନ ବୃତ୍ତିର ଆଭାସ ମିଳୁଥିଲେ ମଧ୍ୟ ତାହା ଶବ୍ଦ ଶକ୍ତିରେ କ୍ଲିଷ୍ଟ ଏବଂ ସାଧାରଣ ବୋଧଶକ୍ତି ପାଇଁ ସହଜ ଗ୍ରାହ୍ୟ ନୁହେଁ । ଯେପରି ସମୁଦ୍ରରେ ସୂର୍ଯ୍ୟର ଉଦୟ ଛବିକୁ ଉଂବରୁ ଶବ୍ଦକଳ୍ପ ଜରିଆରେ ପ୍ରତିଭାତ କରିବାର ପ୍ରାଜ୍ଞ ପ୍ରୟାସ ।[୪୪]

ପୁଣି ସମୁଦ୍ର-ତଟିମାର ସଂଗମକୁ ବର୍ଣ୍ଣନା କଲାବେଳେ କିଂବା ସେମାନଙ୍କର ଆଚରଣକୁ ନିରୀକ୍ଷଣ କଲାବେଳେ କବି ସ୍ୱଚ୍ଛନ୍ଦ କଳା-ବୋଧଦ୍ୱାରା ଅନୁପ୍ରେରିତ ନ ହୋଇ ଦାର୍ଶନିକ ଜିଜ୍ଞାସା ଦ୍ୱାରା ପ୍ରଭାବିତ ହୋଇଛନ୍ତି । ସେଥିରେ ତାତ୍ତ୍ୱିକ ଗାମ୍ଭୀର୍ଯ୍ୟ ପୂରି ରହିଥିବା କବି ଲକ୍ଷ୍ୟ କରିଛନ୍ତି ଏବଂ ତାହା ଜୀବନ-ସ୍ରୋତର ସ୍ୱଧର୍ମ ଓ ସ୍ୱମର୍ମର ସୂଚକ ହୋଇଛି । ତେଣୁ ସେପରି ଦୃଶ୍ୟ ଶିଶୁ ମତିକୁ କ୍ଷତିପ୍ରଦ ବୋଲି ଜାଣି, କବି ସେମାନଙ୍କୁ ସେଠାରୁ ଫେରି ଯାଇଛନ୍ତି ।[୪୫]

ସୁତରାଂ କବି ଯେଉଁ ସୌନ୍ଦର୍ଯ୍ୟର ଦ୍ରଷ୍ଟା ବା ରୂପାଲୋକର ସ୍ରଷ୍ଟା ତାହା ସୁମଧୁର ଭାବର ଦ୍ୟୋତକ ନୁହେଁ । ନୀଳକଂଠଙ୍କ

---

୪୪ । ବୃତ୍ତାଭାସ ପରି ଦିଶିଲା ଉଠି ଅର୍ଦ୍ଧ ମଂଡ଼ଳ,
ବଙ୍କିମ ଲିତ-ପ୍ରାଂତ-ଉଂବରୁ କ୍ରମେ ଦିଶେ ସୁଂଦର ।
(କୋଣାର୍କେ—ଶ୍ଳୋକ ୩୮।୯୦୭ ପଂକ୍ତି)

୪୫ । ଏ' ଜୀବନ ଭରି ତଟିମା ଦେଖି କିଂପାଇଁ ଲୁହି
ତା' ମୁଖେ ତୋଳୁଛି ଲହରୀ, ଏତେ ନିଠୁର ହୋଇ ?......
ଚାଲ ଚାଲ ବାପା, ଜଗତେ ଏହା ଜୀବଂତ ଗୀତି
ବାଳୁତ ବୟସେ କିଂପାଇଁ ଜାଣି ପାଇବ କ୍ଷିତି ।
(କୋଣାର୍କେ—ଶ୍ଳୋକ ୩୯)

ପ୍ରକୃତି ମୁଖ୍ୟତଃ ବର୍ଣ୍ଣନାତ୍ମକ ଏବଂ ଏହି ବର୍ଣ୍ଣନା ବିଳାସ ଭିତରେ କବିଙ୍କର ଅନ୍ତର୍ଦ୍ଦୃଷ୍ଟି; ଦର୍ଶନ କିଂବା ଜୀବନର ମର୍ମକୁ ଉପଲବ୍ଧି କରିବାର ଚେଷ୍ଟା ନହିତ । ବସ୍ତୁରୁ ବ୍ୟକ୍ତି ଅବା ଜଡ଼ରୁ ଜୀବକୁ ଜାଣିବାର କୌତୁହଳରେ ଏହା ପରିପୂର୍ଣ୍ଣ । କେଉଁଠି କେଉଁଠି ସୂକ୍ଷ୍ମଦୃଷ୍ଟି ଦେଇ ଏପରି ଚିତ୍ରଟି ଏ କବି ସୃଷ୍ଟି କରନ୍ତି ଯେ ତାହା ତତ୍ତ୍ୱପୂର୍ଣ୍ଣ ଗମ୍ଭୀର ଅର୍ଥ ବ୍ୟଂଜନାରେ ପିଣ୍ଡିତ ହୋଇଯାଏ ।[୪୬] ବେଳେ ବେଳେ ରସାଳ ଚିତ୍ରଲିପି, ରୋମାଣ୍ଟିକ ଉଷ୍ଣତା ମନରେ ଭରିଦିଏ; ଯେପରି ଖାରବେଳ କାବ୍ୟର ସପ୍ତମ ଛାଂଦରେ ଉଲ୍ଲିଖିତ କଳିକା ଓ ଭୃଂଗର ସଂପର୍କ ଚିତ୍ର ।[୪୭] ତେବେ ମୋଟ ଉପରେ ଏହା ସ୍ପଷ୍ଟ ଯେ କବି, ରାଧାନାଥଙ୍କ ପରି ପ୍ରକୃତିପ୍ରିୟାର ଚିତ୍ରର ଗ୍ରାହକ ନୁହଁନ୍ତି, ବରଂ ପ୍ରଜ୍ଞା-ପ୍ରେମରେ ସେ ଆବଦ୍ଧ । କବି-ପ୍ରଜ୍ଞାକୁ ଭାବଭାସ୍ୱର କରିବା ପାଇଁ ପ୍ରକୃତି ହୋଇଛି ସାଥି ମାତ୍ର ।

## ଇତିହାସ-ଉପାସନା : ସ୍ୱଦେଶାନୁରାଗ

ମୁକ୍ତି ପାଇଁ ଅକୁଣ୍ଠ ସାଧନା ଥିଲା ସତ୍ୟବାଦୀ-କବି-କୁଳଙ୍କ ଜୀବନ ମନ୍ତ୍ର । ଗତ ଶତାବ୍ଦୀର ଦର୍ଶନରେ ପ୍ରତିଫଳିତ ପାଶ୍ଚାତ୍ୟ-

---

୪୬ । କୁସୁମ ଝରିଲେ ବନେ କିରସ ମଧୁ ପବନେ
ଶୀର୍ଣ୍ଣ ପତ୍ର ରସବନ୍ତ ଦ୍ରୁମେ ?
ଯଉବନ ଗଲେ ସରି କାହୁଁ ସେ ଲାବଣ୍ୟ ଶିରୀ
ବିଭସିବ କପୋଳ କୁଂକୁମେ ।
(ଖାରବେଳ—୧ମ ଛାନ୍ଦ)

୪୭ । ରାତିଥାଉଁ ଉଠି ଭ୍ରମର ମଧୁ ଗୁଂଜନେ ବୁଲେ,
ବସିପଡ଼େ କେବେ ଭ୍ରମରେ ମୁଗ୍‌ଧ କଳିକା ଚୂଳେ ।
ମଥା ପୋତିଦିଏ କଳିକା ଭୃଂଗ ଉଳପଡ଼ଇ;
ଉଡ଼ିଯାଏ ପୁଣି କି ରଂଗେ ପଡ଼ି ନ ଛୁଇଁ ମଥା ।
(ଖାରବେଳ—୭ମ ଛାନ୍ଦ)

ପ୍ରିୟତା ଏମାନଙ୍କଠାରୁ ବିଦାୟ ନେଉଥିଲା । ଏମାନେ ବିଦେଶୀଙ୍କୁ ଆହ୍ବାନ କରିବା ଏବଂ ସେମାନଙ୍କୁ ସକଳ ଉନ୍ନତିର ପ୍ରତିଭୂ ବୋଲି ମାନି ନେବାକୁ ପ୍ରସ୍ତୁତ ନ ଥିଲେ । ପାଶ୍ଚାତ୍ତ୍ୟ ଏମାନଙ୍କର ଆଦର୍ଶ ନ ଥିଲା । ପ୍ରାଚୀନ ଭାରତ କିଂବା ଉତ୍କଳକୁ ସକଳ ଆଦର୍ଶର ଉତ୍ସଭୂମି ରୂପେ ଏମାନେ ବରଣ କରିଥିଲେ ଏବଂ ଆତ୍ମ ନିରୀକ୍ଷଣର ଭାବ ବୃଦ୍ଧି ପାଇଁ ଯତ୍ନ କରିଥିଲେ । ଏଥିପାଇଁ ଅବଶ୍ୟ ପ୍ରଥମ ମହାସମର କାଳୀନ ବିଶ୍ବର ଭୂମିକା ଏବଂ ବୁଦ୍ଧିଜୀବିର ଚେତନା ପରିମଣ୍ଡଳୀକୁ ନୂଆ ରୂପ ଯୋଗାଇଥିବା ସମୟର ଅବଦାନ ହିଁ ଦାୟୀ ।

ନୀଳକଂଠଙ୍କ ବିଶ୍ବାସରେ ଇତିହାସ ଚିତ୍ତକୁ ପ୍ରସାରିତ କରିପାରେ ଏବଂ ବିହ୍ବଳ ହେବାର ଉଦ୍‌ବୋଧନ ଯୋଗାଇପାରେ । ଜାତୀୟତାବୋଧର ଉନ୍ମେଷ ପାଇଁ କବି ତାର ଉପାସନା କରିଛନ୍ତି ।[୪୮] ଇତିହାସର ସ୍ମୃତି ବା ସ୍ଥାପତ୍ୟକୁ ପ୍ରଜ୍ଞା-ଚେତନାର ମୂର୍ତ୍ତିମନ୍ତ ଆଧାରରୂପେ ଅନୁଭବ କରି ବର୍ତ୍ତମାନର ପ୍ରେରଣା ପାଇଁ କବି ତାହାକୁ ଉପଯୋଗ କରିଛନ୍ତି ।[୪୯] କବିଙ୍କ ଦୃଷ୍ଟିରେ

---

୪୮ । ଐତିହାସିକ ଭୂମି ଏ ଏଥି ବାଳକକୁଳ
ଇତିହାସ-ସ୍ମୃତି-ପୁଲକେ ଲଭିବେ ହେବେ ବିହ୍ବଳ ।
(କୋଣାର୍କେ—ଶ୍ଳୋକ ୭-୧୩୧ ପଂକ୍ତି)

୪୯ । ଜୀର୍ଣ୍ଣ ମୁଖଶାଳା ଉଠିଛି କୀର୍ତ୍ତି କଂକାଳ ପରି
ପ୍ରଜ୍ଞ ପୁରୁଷଙ୍କ ପ୍ରେତ ସେ ଏବେ ଦିଶେ ବାହାରି
କାଳର ଯାତନା ଦିଶଇ ଅଂଗେ ବିକାଶି ତାର
ବୁଝିଲ ତ ଶିଶୁ, କଲ ତ ତହିଁ ଏତେ ବିହାର ?
(କୋଣାର୍କେ—ଶ୍ଳୋକ ୯-୧୮୯ ପଂକ୍ତି)

ଇତିହାସ ପର ପୂର୍ବ ପୁରୁଷଗଣ ବା ପରଂପରା ମଧ୍ୟ ଜାତୀୟ-ଜୀବନର ବିକାଶ ଓ ପ୍ରଗତି ପାଇଁ ପ୍ରେରଣାର ଉତ୍ସ ହୋଇଛି ।[୫୦]

କବିଙ୍କ ଇତିହାସ ଉପାସନା-ପ୍ରବୃତ୍ତି ଜାତିର ସାଂସ୍କୃତିକ ଜୀବନର ସାମଗ୍ରିକ ଭିତ୍ତି-ଚିତ୍ର ପ୍ରକଟିତ କରିଛି । ସାହିତ୍ୟ, ଧର୍ମ, ରାଜନୀତି, ବାଣିଜ୍ୟ ଏବଂ ସାମରିକ ଜୀବନର ଐତିହ୍ୟ ସୂଚନାରେ ଏହା ସ୍ପଷ୍ଟ (ଶ୍ଳୋକ ୧୩, ୧୪, ୧୫) । ତାଂକ କାବ୍ୟରେ କଳା-ବୋଧ ଅପେକ୍ଷା ଇତିହାସ-ବୋଧକୁ ଗୁରୁତ୍ୱ ଦିଆଯାଇଛି । ସେଥିପାଇଁ କବି, ଇତିହାସର ସତ୍ୟ-ସ୍ୱରୂପ ପ୍ରତି ବିଶ୍ୱସ୍ତ ଦୃଷ୍ଟି ଦେଇଛନ୍ତି । କଳା-ପ୍ରେମରେ ପଡ଼ି ଅତୀତର କବି, କରିଥିବା ଐତିହାସିକ ଅପଳାପକୁ ନୀଳକଂଠ ଅସ୍ୱୀକାର କରିଛନ୍ତି ।[୫୧] କବିଙ୍କ ଦୃଷ୍ଟିରେ ଐତିହ୍ୟର ଦୀପ୍ତି ଏତେ ପ୍ରାଣ-ସମ୍ମୋହକ ଯେ ଏହା କେବଳ ଜାଗରଣରେ କାହିଁକି ସ୍ୱପ୍ନରେ ମଧ୍ୟ ଜୀବନକୁ ସ୍ପନ୍ଦିତ କରିପାରେ ।[୫୨]

---

୫୦ । ପିତାମହେ ତବ ଓହ୍ଲାଇ ସରଗରୁ ପଲକେ
ସ୍ୱରଗେ ସରଣୀ ଦେଖାଇ ନେବେ ବନ୍ଧୁ ପୁଲକେ ।
(କୋଣାର୍କେ—ଶ୍ଳୋକ ୧୦-୨୨୫ ପଂକ୍ତି)

୫୧ । ଧରଗୁଡ଼ କଂପା ଯିବେ ସେ ବୀରବାଳା ନଂଦିକା
ସହକାର ଦ୍ରୁମ ଗହଳେ-ଭେଦ କ୍ଷୀଣ ଚଂଦ୍ରିକା
କଉସୁଲ୍ୟା ଗାଂଗ ଧଉଳ ଏହି ନୟନେ ନାଚେ;
କବିଂକ ସୁମରି ବିରାଗେ ମୁଖ ଫେରାଅ ପଛେ ।
(କୋଣାର୍କେ—ଶ୍ଳୋକ ୧୫-୩୩୯ ପଂକ୍ତି)

୫୨ । ବାରବାଟୀ ଏବେ କଂପିବ ରଣଭେରୀ କୁହାଟେ
ସ୍ୱପନେ ହେ ତବ ତରୁଣ ପ୍ରାଣେ ବନ୍ଧୁ ସ୍ପଂଦନ
କଳାପାହାଡ଼ର ଶୁଣିବ ତୀବ୍ର ଭେରୀ ନର୍ଦନ ।
(ତତ୍ରୈବ—ଶ୍ଳୋକ ୧୬-୩୬୦)

ଜାତୀୟ ଅଖଣ୍ଡତାର ଚିରସ୍ଥାୟୀ ସଂରକ୍ଷା ପାଇଁ କବି ହୋଇଛନ୍ତି ଏକାନ୍ତ ଅଭିଳାଷୀ ।[୫୩] ବୀର-ଜୀବନର ପୁନର୍ବୁ-ଜ୍ଜୀବନ ପାଇଁ ଜାତି-ଲାଗି ପ୍ରାଣ-ପରମ ବକ୍ତବ୍ୟ ଦେଇ କବି ତାଂକର ଜାତୀୟ-ମମତାବୋଧକୁ ଚିହ୍ନିତ କରିଛନ୍ତି । 'ବୀରର ବିବେକ ଶୋଭୁ ଗୋ ଚିର ତୋର ଏ ମର୍ମ !' ଏପରି କାମନା କବିଂକର । ଏହା ମଧ୍ୟ ସ୍ୱଦେଶାନୁରାଗରେ ଉଚ୍ଛଳ କବି-ମନର ନମ୍ର ଅଭିଳାଷ । କବି ସ୍ୱାଧୀନତା ବା ମୁକ୍ତିର ଭାବନାରେ ଭାବିତ । ସ୍ୱାଧୀନତାର ଅନୁଭବରେ ସ୍ଥାୟୀ ସ୍ୱାଦ ଅଛି ଏବଂ ଅନୁମାନରେ ରମଣୀୟ ଉନ୍ମାଦ ଅଛି ବୋଲି କବିଂକ ବିଶ୍ବାସ । କାରଣ ଅନୁମାନରେ ଯେକୌଣସି ବସ୍ତୁକୁ ବଡ଼ କରି ଦେଖିହୁଏ, ଅନୁଭବରେ ତା'ର ଯଥାର୍ଥ ଧର୍ମ ଉପଲବ୍ଧି କରିହୁଏ । ତେଣୁ କବି ଅନୁମାନରେ ସ୍ୱାଧୀନତାର ସ୍ୱାଦ, ବ୍ୟଂଜନାତ୍ମକ ଭାବେ ଲାଭ କରିଛନ୍ତି ଓ ତାହାକୁ ଗୌରବ ଦେଇଛନ୍ତି । ଅନୁମାନରେ ସ୍ୱାଧୀନତାର ଯେଉଁ ବିଶାଳ ସତ୍ତା ନିର୍ଭର ଉଠୁଛି, କବି ତା'ର ଆରାଧନା କରିଛନ୍ତି । କବିଙ୍କର ସ୍ୱଦେଶ ପ୍ରେମ ଓ ଇତିହାସ ଉପାସନା ଏହି ମୁକ୍ତି-ବୋଧକୁ ନେଇ ଉତ୍କଣ୍ଠିତ ହୋଇଛି ।[୫୪]

ଏହି ଇତିହାସ ଉପାସନା ଜରିଆରେ ନୀଳକଂଠ, ଅତୀତ ସଂସ୍କୃତି ଓ ତା'ର ନିର୍ମାତା ମାନବ-ବଂଶଧରଙ୍କୁ ମର୍ଯ୍ୟାଦା ଦେଇଛନ୍ତି । ଇତିହାସର ପ୍ରେରଣାରୁ ମାନବତାର ଉତ୍ତରଣ ଓ ଜାତୀୟତାବୋଧର ସଂକ୍ରମଣ—ଦୁଇଟିର ସଂଭାବ୍ୟ ସଫଳତା

---

୫୩ । ଯାବତ, ତାବତ ଓଡ଼ିଆ ତୁଂଗ-ସ୍ୱାଧୀନ-ଶିର
ରହୁ, ଯେତେ ଦିନ ଟେକିଛି ମଥା ମହେଂଦ୍ର ଗିରି ।
(କୋଣାର୍କେ—ଶ୍ଳୋକ ୧୭-୩୧୫)

୫୪ । ସ୍ୱାଧୀନତା ଆହା ! ସେ କିବା ଅନୁମାନର ସ୍ୱାଦେ ?
(ଖାରବେଳ—୭ମ ଛାନ୍ଦ)

କାବ୍ୟରେ ଆଣିବାକୁ କବି ଚେଷ୍ଟା କରିଛନ୍ତି । ଜ୍ଞାନ ଓ ଜୀବନ ପ୍ରତି ମାର୍ମିକ ନିରୀକ୍ଷା ବଳରେ ହିଁ ଏହା ସମ୍ଭବ ହୋଇଛି । କୋଣାର୍କ ଉପରୁ ସିଧା ସଳଖ ଦୃଷ୍ଟି ଦେଇ କବି ଯେଉଁ ଜୀବନକୁ ଦେଖିଛନ୍ତି ତାହା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସୀମା ବଳୟ ଉପରେ ମୂର୍ତ୍ତିମାନ । ଗୋଟିଏ ଜାତିର ପ୍ରବହମାନ ଜୀବନ ଧାରା ସହିତ କବିର ଦୃଷ୍ଟି ଏଠି ସାମିଲ ହୋଇ ଯାଇଛି । ପୁଣି ଅନାଗତ ନବ-ଜୀବନର ପଦଧ୍ୱନିରେ କବି-ଦୃଷ୍ଟିର ପରିଧି ପ୍ରୀତି-ଉଲ୍ଲାସରେ ଫୁଲି ଉଠିଛି ।[୫୫] ସୁତରାଂ କବି ହୋଇଛନ୍ତି; ଜୀବନର ପୂର୍ବଦ୍ରଷ୍ଟା ଏବଂ ପରଂପରାର ପୁରସ୍କାରକୁ ଅଂଗୀକାର କରି ଅନାଗତର ନାୟକ । କୋଣାର୍କର ମଳ-ସ୍ଥାପତ୍ୟ ଏବଂ ତା' ଆତ୍ମାର ଅବକ୍ଷୟ, କବିଙ୍କ ସ୍ନାୟୁ-ଉପାନ୍ତରେ ସିତ୍କାରର ଯେଉଁ ଅଖଣ୍ଡ ଭଉଁରୀ ସୃଷ୍ଟି କରିଛି, ତାହା ଯେପରି ବସ୍ତୁ ବିସ୍ତାରକ ସେପରି ମଧ୍ୟ ମାନବିକ ସଂବେଦନ ସଂସ୍କାରକ ।[୫୬] କୋଣାର୍କର କଳା କଅଁଳ ଗୁଡ଼ି ଆଘାତର କେତେ କ୍ଷତ ଚିହ୍ନ ଯେନ ବୀଭତ୍ସ ଓ ବିଭଂଗ ହୋଇଛି ତା'ର ଇୟତ୍ତା ନାହିଁ । ସହାନୁଭୂତିଶୀଳ କବି, କଳାର ଏଇ

---

୫୫ । ଅତୀତୁ ଅତୀତ ପ୍ରସାରେ ବହି ଜୀବନ ଧାରା,
ବ୍ୟାପିଯିବ ମହା ବିସ୍ତାରେ ଭେଦି ଶରୀର କାରା .........
ପରଶେ ପରଶେ ବଢ଼ଇ ନବ-ଜୀବନ-ଧାରା
ପଲକେ ପଲକେ ସ୍ଫୁରଇ ପ୍ରାଣ ପୀରତି-ଭରା ।
(କୋଣାର୍କେ-ଶ୍ଳୋକ ୩-୭୩)

୫୬ । ବାରୁଣି-ତାମସ-ଅରୁଣ-ଭସେ ପ୍ରାଚୀ ଲଲାଟେ
ଧୂସର-ତିଳକ ମଂଦିର ହସେ ସାଗର-ତଟେ
ଫେନ-ତାରକିତ-ନୀଳିମା ଭେଦି ଉଠିଲା ଛବି
ପୁଛୁଥିଲ, ଏ କି କୋଣାର୍କ, ଉଡ୍ର ଆରତି ରବି ?
(ତତ୍ରୈବ-ଶ୍ଳୋକ ୭)

କଷଣକୁ ଆପଣାର କଷଣ ଭଳ ମନେ କରିଛନ୍ତି । ସେଇଠି ତାଙ୍କର ମାନବାତ୍ମା ସକରୁଣ ଆତ୍ମବିଳାପରେ ଚଂଚଳ ହୋଇ ଉଠିଛି । ଜାତୀୟତାର ପୁଣ୍ୟ-ପିପାସା, ମାନବତାର ଉଦାର ତପସ୍ୟାରେ ପରିଣତ ହୋଇଛି ।

## କ୍ଲାସିକ ଓ ରୋମାଣ୍ଟିକ କବି ଦୃଷ୍ଟି

ମାଳକଣ୍ଠଙ୍କ କାବ୍ୟ-ଭୂମିରେ ଇଂରେଜ ଭିକ୍ଟୋରିଆନ କବିକୁଳଙ୍କ ଶୃଙ୍ଖଳାବଦ୍ଧତା ଏବଂ ରୋମାଣ୍ଟିକମାନଙ୍କ ନିର୍ବାଧ ଆବେଗ-ନିର୍ଝରର ଏକ ମିଶ୍ର ଧାରା ପ୍ରବାହିତ ହୋଇଥିବା ଲକ୍ଷ୍ୟ କରି ହୁଏ । ପୁଣି ଭାରତୀୟ ସାହିତ୍ୟର ଗମ୍ଭୀର ଦୃଷ୍ଟି ଓ ସମୁନ୍ନତ ଭାବ-ଲିପିର ହସ୍ତାକ୍ଷର ସହିତ ଯେଉଁ ଯେନ ସାକ୍ଷାତ ହୁଏ । ତେଣୁ ତାଙ୍କର ଚେତନା-ଜଗତ ଯେ କ୍ଲାସିକ ଓ ରୋମାଣ୍ଟିକ ମାନସିକତାରୁ ମୁକ୍ତ, ଏ କଥା କୁହାଯାଇ ନପାରେ ।

ରାକା-ରଜନୀର ବିସ୍ତାର ପାଇଁ କବିଙ୍କର ଆର୍ତ୍ତ କାମନା କିଂବା ବାଆ-ବତାସି-ବର୍ଷା ଯୋଗୁଁ ଆତଂକ ଇତ୍ୟାଦି ପରିସ୍ଥିତିର ପ୍ରତିକୂଳ ଶବ୍ଦ-ଚର୍ଚ୍ଚା ସହିତ କବି-ଜୀବନର ଶୈଶବ ସ୍ମୃତି, ସମୀରକୁ ବାର୍ତ୍ତା-ଗୁଣ୍ଡା ଓ ଜାତୀୟ ଐତିହ୍ୟର ସଂପ୍ରସାରକ ରୂପେ ମାନିନେବାର କାବ୍ୟିକ ଉଦ୍ୟମ ଏବଂ କାବ୍ୟର ବିବିଧ ଅଂଗରେ ଲୋକ କଥାର ବିଶ୍ୱସ୍ତ ବିନିଯୋଗ; ଇତ୍ୟାଦି କବି-ଅଭିପ୍ରାୟରେ ରୋମାଣ୍ଟିକ ଦୃଷ୍ଟିର ପ୍ରତିଫଳନ ସ୍ପଷ୍ଟ । ପୁଣି ରାମଚଂଡ଼ୀଙ୍କୁ ପ୍ରତ୍ୟକ୍ଷ ସାକ୍ଷୀ ରୂପେ ମାନି ନେଇ ତାହାଙ୍କୁ ଜାତିର ବିଗତ ଗର୍ବ ଓ ଗାରିମାର କାହାଣୀ-କଥନ ପାଇଁ ଅନୁରୋଧ ଜଣାଇଲା ବେଳେ କବି-ମନର ବ୍ୟାକୁଳତାରୁ (ଶ୍ଳୋକ ୨୯—୩୭) ରୋମାଣ୍ଟିକ ଭାବ-ରୂପର ପରିଚୟ ମିଳେ ।

କବିଙ୍କର ରୋମାଣ୍ଟିକ ଦୃଷ୍ଟି ରାମଚଂଡ଼ୀଙ୍କ ପାଷାଣୀ-କାୟାକୁ ଭଂଗି ଦେଇଛି । ସେଠି କବି ଦେଖିଛନ୍ତି ରାମଚଂଡ଼ୀଙ୍କର ଏକ ଜୀବନ୍ତ ଭାବ-ମୂର୍ତ୍ତି । କବିଙ୍କର ଭାବନା ହୁଏତ ଏହି ଆବିଷ୍କାର କରିଛି ଯେ, ରାମଚଂଡ଼ୀ ଅତୀତ ସ୍ମରଣ କରି ଆଜି 'ପଥରକାୟା' । ଅତୀତର ବିପର୍ଯ୍ୟୟ ସହିସହି ପଥର । ପୁଣି ରାମଚଂଡ଼ୀ ଯଦି ଅତୀତ କଥାକୁ ମୁକ୍ତ କଣ୍ଠରେ, ସ୍ୱାଧୀନ ମନରେ ଘୋଷଣା କରେ ତା'ହେଲେ ଏବର ପରିସ୍ଥିତି ତାକୁ ହୁଏତ ସମର୍ଥନ ଦେଇ ନପାରେ । ଏଇ ଆଶଂକାର ନିରାକରଣ ପାଇଁ କବି-ଭାଷା ପରିସ୍ଥିତିକୁ ପର୍ଯ୍ୟାଲୋଚନା କରି ରାମଚଂଡ଼ୀଙ୍କ ସଂଳାପ ଜାଣିବା ପାଇଁ ତାଙ୍କୁ ନୈତିକ ତଥା ଆନ୍ତରିକ ଭରସା ଦେଇଛନ୍ତି । ତାଙ୍କର ସଂକୋଚ ମୁକ୍ତି ପାଇଁ କବି ମଧ୍ୟ ଚେଷ୍ଟା କରିଛନ୍ତି । ରାମଚଂଡ଼ୀ ଓ କବିଙ୍କ କଥା ଭାଷାର ଶ୍ରୋତା ଏବର ଅବସ୍ଥାରେ, ଆଖପାଖର ନଈ, ବାଲି ପ୍ରାଂତର, ଦେଉଳ ଇତ୍ୟାଦି ପାର୍ଥିବ ପୃଥିବୀ ହେବା ସମ୍ଭବ ନୁହେଁ ବୋଲି ବିଶ୍ୱାସ ଯୋଗ୍ୟ ଆଶ୍ୱାସନା ଦେଇ ଇତିହାସ ଜାଣିବାରେ କବି ତତ୍ପରତା ପ୍ରକାଶ କରିଛନ୍ତି । ଏଠି କବିଙ୍କର ରୋମାଣ୍ଟିକ ଚେତନା ସ୍ପଷ୍ଟ ହୋଇ ଉଠିଛି ।[୫୭] କାବ୍ୟର ବିଭିନ୍ନ ସ୍ଥଳରେ କବି, ସ୍ୱପ୍ନ-କାହାଣୀ କିଂବା ଦୈବୀ-ବାଣୀର ଉଲ୍ଲେଖ ଭିତ୍ତିରେ ଅତିପ୍ରାକୃତିକ ଉପାଦାନ (**Supernatural element**) ର ବିନିଯୋଗ କରି ରୋମାଣ୍ଟିକ କବି-ଦୃଷ୍ଟିର ପରିଚୟ ଦେଇଛନ୍ତି । ଜମୁଜେମା ଓ ବାଳକକୁଳଙ୍କ ସ୍ୱପ୍ନ କାହାଣୀ, ମାୟାଦେବୀଙ୍କୁ ଦୈବୀ ନିର୍ଦ୍ଦେଶ ପ୍ରଭୃତି ଘଟଣା ରୋମାଣ୍ଟିକ ଉତ୍କଣ୍ଠା ସଂଗ୍ରହ କରିଛି ।

---

୫୭ । ନ ଶୁଣିବ ନଈ, ଶୁଣିବ ନାହିଁ ବାଲି ପ୍ରାଂତର;
କୋଣାର୍କ ଦେଉଳେ ଶୁଭିବ ନାହିଁ ଆଂଭ ବିଗ୍ରହ ।
ସଂକୋଚ ପାଉଛୁ କାହାକୁ ? କହ ଫେଡ଼ି ମା' ଏଥି
ବହୁ ଯତ୍ନେ ଆଜି ଆସି ମା, ମୁହିଁ ତୋର ଅତିଥି ।
(କୋଣାର୍କେ—ଶ୍ଳୋକ-୩୩/୮୦୧-୪)

ଖାରବେଳ ଓ କୋଣାର୍କେ-ଉଭୟ କାବ୍ୟରେ ସାମନ୍ତ ସେନାଙ୍କ ସମରସଜ୍ଜା, ଯୁଦ୍ଧବୃତ୍ତି ଓ ମାଟି-ମୋହର ଆନ୍ତରିକ ଅଭିବ୍ୟକ୍ତିରେ କବି କ୍ଲାସିକ-ଚେତନାର ବଶବର୍ତ୍ତୀ ହୋଇଛନ୍ତି। ବୀର-ଚରିତ୍ର ଓ ବୀର-ପ୍ରଣୟର ପରିଚର୍ଯ୍ୟାରେ ସେହି କ୍ଲାସିକ ଦୃଷ୍ଟିର ପ୍ରତିଫଳନ। ମାୟାଦେବୀ କିମ୍ବା ଧୂମ୍ରି ପରି ଚରିତ୍ରଙ୍କର ମାନସିକ ଐଶ୍ୱର୍ଯ୍ୟକୁ ସାଧାରଣ ଆଖିର ଅକ୍ଷରରେ ଲେଖି କ୍ରମଶଃ ତାକୁ ଆଦର୍ଶର ଆଧାରରେ ଚିରନ୍ତନ ମୂଲ୍ୟ ଦେଇ ନିକଷିତ କରିବା, କବି-ଅଭିପ୍ରାୟ ମୂଳରେ କ୍ଲାସିକ ମନୋଭଙ୍ଗୀର ପ୍ରଭାବ ନହିଁ। କବି ଦୃଷ୍ଟିରେ ସେମାନେ ଭଙ୍ଗୁର ନାରୀତ୍ୱର ପ୍ରତୀକ ନୁହଁନ୍ତି, କ୍ଷୟଶୀଳ ତାରୁଣ୍ୟର ଚପଳ ଅନୁଭବ ନୁହଁନ୍ତି—ବରଂ ସଂଯମ ଓ ଶାଳୀନତାର ଚିରନ୍ତନ ଭାବ-ମୂର୍ତ୍ତି। ଆର୍ଯ୍ୟ ଗୌରବର ଅନୁଭବ ଏମାନଙ୍କ ବ୍ୟକ୍ତିତ୍ୱରେ ଆରୋପିତ ଏବଂ ଏମାନେ ଇତିହାସର ଅବିସ୍ମରଣୀୟ ଚରିତ୍ର ରୂପେ ପରିକଳ୍ପିତ। ସୁତରାଂ କବିଙ୍କର କ୍ଲାସିକ ଦୃଷ୍ଟି ଚରିତ୍ର-ଚୟନ ଓ ସେମାନଙ୍କ ଭାବ-ରୂପ ଅନୁଶୀଳନରେ ପରିଦୃଷ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ।

## କାବ୍ୟ-କବିତାରେ ପାଶ୍ଚାତ୍ୟ ପ୍ରଭାବ

'କୋଣାର୍କେ' କାବ୍ୟରେ ଦ୍ରୁମ ପୀଡ଼ିତ ଶିଶୁକୁଳଙ୍କୁ ଓଡ଼ିଶାର ଜାତୀୟଗାଥା ଶୁଣାଇ ଦେଲାବେଳେ କବି ଯେଉଁଠି ଶିଶୁ ମନର ଗହନ ସ୍ତରକୁ ଓହ୍ଲାଇ ଯାଇଛନ୍ତି ଏବଂ ତାଙ୍କର ପ୍ରବୀଣ ଆତ୍ମା ଯେଉଁଠି ଶୈଶବ ସ୍ମୃତିର ରୋମନ୍ଥନ କରିଛି ସେଇଠି ସେ ବହୁଳ ଭାବେ ଓ୍ୱାର୍ଡ଼ସଓ୍ୱାର୍ଥଙ୍କ କବି-ଭାବର ଅନୁସାରୀ ହୋଇଛନ୍ତି। **'Ode to Intimations of Immortality'** କବିତାରେ ପ୍ରତିଫଳିତ ଓ୍ୱାର୍ଡ଼ସଓ୍ୱାର୍ଥଙ୍କର ଶୈଶବ-ଦର୍ଶନ-ଧାରାକୁ ନୀଳକଣ୍ଠ ଅନୁସରଣ କରିଛନ୍ତି।

ପ୍ରକାଶ କରିବେ ଉଠିବ ଶିଶୁ ହୃଦୟ ନାଚ
ସ୍ମରି ସେ ରବ ଆସିଛୁ ମୁହିଁ ବେଳା ମରୁଛୁ ।—ଏହାହିଁ ହୋଉଛି ପ୍ରକାଶ ଆମ୍ଭର ଶୈଶବାସ୍ଥା ପାଇଁ ଅନୁଶୋଚନା । କିନ୍ତୁ ଏପରି ଅନୁଶୋଚନାର ଭାବ-ସୋପାନରେ ପହଞ୍ଚିବା ପୂର୍ବରୁ କବି ଯେପରି ଶିଶୁ ମନ ଓ ଆଚରଣକୁ ସ୍ତର ପରେ ସ୍ତର ବର୍ତ୍ତମାନରେ ଥାଇ ଉପଲବ୍ଧି କରି ପାରିଛନ୍ତି; ତହିଁରେ Wordsworthଙ୍କର କବିତାର ଅନ୍ତର୍ମର୍ମ ଲକ୍ଷ୍ୟ କରି ହୁଏ ।[୫୮] ଓ୍ୱାର୍ଡସଓ୍ୱାର୍ଥଙ୍କ ପଂକ୍ତିଚୟ ସହିତ କୋଣାର୍କେ କାବ୍ୟର, ୨/୩/୬ ଶ୍ଳୋକର କେତେକ ଅଂଶ ମିଳେଇ ପଢ଼ିଲେ ଇଂରେଜ କବିଙ୍କ ଭାବ-ଧ୍ୱନି ସ୍ପଷ୍ଟ ବାରି ହୁଏ ।

ବଂଶୀ ମୁଖରେ ଅତୀତ କଥନ ଏବଂ ତାହାକୁ ପୁଣି କାବ୍ୟର ଉପାଦାନ ରୂପେ ବ୍ୟବହାର କରିବା (କୋଣାର୍କେ-୨୨-୨୮ ଶ୍ଳୋକ ଏବଂ ମାୟାଦେବୀ), ନୀଳକଣ୍ଠଙ୍କ କାବ୍ୟ ସାଧନାର ଏକ ନୂତନ ରୀତି । ଅଭିନବତା ପାଇଁ ଏହା ପୂର୍ବ-ବର୍ତ୍ତୀ କାବ୍ୟ-ଧାରା ଠାରୁ ପୃଥକ । କିନ୍ତୁ ଏଥିରେ ପାଶ୍ଚାତ୍ୟ-କାବ୍ୟ-କବିତାର ପ୍ରଚ୍ଛନ୍ନ ପ୍ରଭାବ ନାହିଁ ।

---

୫୮ । There was a time when meadow, grove and stream
The earth, and every common sight
To me did seem, apparelled in celestial light,
The glory and freshness of a dream.
It is not now as it hath been of yore
Turn where soever I may, by night or day,
The things which I have seen
I now can see no more.
(ode to Intimations of Immortality—Wordsworth)
ତୁଳନୀୟ—
କୋଣାର୍କେ-ରାମଚଣ୍ଡୀ ଠାରେ ରୀତି-୨/୩/୬ ଶ୍ଳୋକ ।

ଇଂରେଜ କବି ସ୍କଟ୍, ଇତିହାସ ଓ କିଂବଦନ୍ତୀକୁ ବିଷୟବସ୍ତୁ କରି କାବ୍ୟ-ରଚନା କଲାବେଳେ ବଂଶୀ-ଗାନ ବା ବଂଶୀ-ମୁଖ ନିସୃତ କଥାକୁ କାବ୍ୟକ ପ୍ରକାଶ ଦେଲା ପରି, ନୀଳକଣ୍ଠ ତାହାଙ୍କ ପ୍ରେରଣାରେ କୋଣାର୍କରେ ସେପରି କରିଛନ୍ତି । ସ୍କଟଙ୍କର 'The Lays of the last ministrel' (1805) ମେଟ୍ରିକାଲ୍‌ରୋମାନ୍‌ସ କାବ୍ୟରେ, ଡିଲୋରେନ (Sir William Deloraine) ନାମକ ଜଣେ ସାମନ୍ତ ଯୋଦ୍ଧା ମେଲରୋଜ (Melrose) ମଠରେ ଥିବା ଐନ୍ଦ୍ରଜାଳିକ ମାଇକେଲ ସ୍କଟଙ୍କ ସମାଧିରୁ ତାଙ୍କର ଗୋପ୍ୟ ବିଦ୍ୟା ପୁସ୍ତକ ଆଣିବାକୁ ରାଣୀଙ୍କ ଦ୍ୱାରା ପ୍ରେରିତ ହୋଇଛନ୍ତି । ସେ ଅଶ୍ୱାରୋହଣ କରି ବହୁ ବନଭୂମି ଗିରି ପ୍ରାନ୍ତର ଅତିକ୍ରମ କରି ଯାଉଥିବା ବେଳେ ହେଜେଲଡ଼ିନ (Hazeldean) ଗଡ଼ରେ ପ୍ରବେଶ କରିଛନ୍ତି । ଗଡ଼ରକ୍ଷୀ ଅନ୍ଧାର ରାତିରେ ଅଶ୍ୱର ପଦଧ୍ୱନି ଶୁଣି ସାଥୀଙ୍କର ପରିଚୟ ପୁଚ୍ଛନ୍ତି ।[୫୯]

୫୯ । The clattering hoofs the watchmen mark :
'Stand, ho ! thou courier of the dark'
'For Branksome, ho !' the Knight rejoined,
And left the friendly tower behind
(Sir Walter Scott—The Lays of the Last ministrel-Canto I XXVI)

ତୁଳନୀୟ—

ଗିରି ଦୁର୍ଗେ ଡ଼ାକେ ପ୍ରହରୀ "କିଏ ସାଥୀ ଅଂଧାରେ ?"
ଉତ୍ତରେ ସାମଂତ, "ଆଂଭେ ହେ ଗଜପତି ଗୁମ୍ଫରେ ।"
କପିଳାସ ଶୃଂଗ ଶିଖରେ ରାତି ହେଲା ପ୍ରଭାତ,
ମହାନଦୀ ଡେଇଁ ଛାଡ଼ିଲେ ଖରେ ସେ ଗଡ଼ଜାତ ।
(ନୀଳକଣ୍ଠ ଦାସ-କୋଣାର୍କେ-ରାମଚଂଡ଼ୀ ଠାରେ ରାତି-
ଶ୍ଳୋକ ୨୭/୭୬୧-୭୬୪)

'କୋଣାର୍କେ' ରେ (ଶ୍ଳୋକ ୨୭) ଜଣେ ସାମନ୍ତ ସାଧୀ, କାଂଚି-କଟକରେ ଥିବା ଉତ୍କଳର ନରପତିଙ୍କୁ ଉତ୍ତର ଦିଗରୁ ଆସନ୍ନ ଯବନ ଆକ୍ରମଣର ସଂବାଦ ଦେବାକୁ ଗଲାବେଳେ ବ୍ରାହ୍ମୀ-ତଟିନୀ-ପାର ହେଲା ଉତ୍ତାରୁ ଗିରି ଦୁର୍ଗରେ ଥିବା ଜଣେ ପ୍ରହରୀ ଠିକ ଏହିପରି ଅଶ୍ୱାରୋହୀଙ୍କର ପରିଚୟ ପୁଚ୍ଛୁଛନ୍ତି ।

ପୁଣି କବି ସ୍କଟ ଯେପରି ବନ୍ଦୀ-ଗୀତ ଜରିଆରେ କାବ୍ୟ-ସଂପୃକ୍ତ କଥାଂଶଟିକୁ ପ୍ରକାଶ କରିଛନ୍ତି, ନୀଳକଂଠ ମଧ୍ୟ ଅନୁରୂପ ଶୈଳୀରେ ବନ୍ଦୀ-ଗୀତ ମାଧ୍ୟମରେ ସାମନ୍ତର ଏତାଦୃଶ ଶୌର୍ଯ୍ୟ-ଗତିକୁ ଉଲ୍ଲେଖ କରିଛନ୍ତି ।

ସୁତରାଂ ପ୍ରଣାଳୀ ଓ ପ୍ରବୃତ୍ତି ଦୃଷ୍ଟିରୁ ନୀଳକଂଠଙ୍କ କାବ୍ୟର ଏହି ଅଂଶ, ସ୍କଟଙ୍କ କାବ୍ୟର ଏକ ପ୍ରତ୍ୟକ୍ଷ ଆହରଣ ଏବଂ ତାହାର ପ୍ରଭାବରେ କବିଙ୍କର ଏପରି ପରିକଳ୍ପନା ଯେ କାବ୍ୟ-ଗତ ହୋଇଛି ଏହା ନିଃସଂଦେହ ।

ସ୍ୱପ୍ନ ସୂତ୍ର (**Dream media**) ରେ କାବ୍ୟ-କଥା ଏବଂ କବିଙ୍କ ବ୍ୟକ୍ତିତ୍ୱକୁ ସଚିତ କରିବା ଓଡ଼ିଆ କାବ୍ୟ-କଳାରେ ନୀଳକଂଠଙ୍କର ଏକ ନୂତନ ସଂଯୋଜନା । ସ୍ୱପ୍ନ-ସ୍ଥିତିରେ ଶିଶୁ କୁଳଙ୍କ ମନକୁ ଜାଗ୍ରତ ଐତିହ୍ୟର ରସ କବି ଯୋଗାଇ ଦେଇଛନ୍ତି । ଶିଶୁଂକ ମନରେ ଏହି ସ୍ୱପ୍ନ କେତେକ ସ୍ଥଳରେ ଅବକଳ୍ପନା (**Illusion**) ଆଉ କେତେ ବେଳେ ବା ଚିତ୍ତବିକାର (**Hallucian-tion**)ର ରୂପ ନେଇଛି । ସ୍ୱପ୍ନ-ତତ୍ତ୍ୱ ସଚେତନ କବି, କାବ୍ୟ-ଲେଖାରେ ମନ-ଜଗତରେ ସ୍ୱପ୍ନର ଯଥାର୍ଥ ପ୍ରତିକ୍ରିୟାକୁ ସୂଚିତ କରିଛନ୍ତି । ଶିଶୁ ମନରେ ସ୍ୱପ୍ନଭାବ ଯେତିକି ଜାତୀୟ ମର୍ମ-ଉଚ୍ଚାଟକ ହୋଇଛି, ସେତିକି ହୋଇଛି ଗ୍ଳାନିକର । ସ୍ୱପ୍ନରେ

ସ୍ୱପ୍ନର ମିଶ୍ରଣ ଘଟୁଥିବା ଯାକେ ତାଙ୍କ ପ୍ରାଣ ଆମୋଦିତ ହୋଇ ରହୁଛି, ଯେଉଁଠି ସ୍ୱପ୍ନ ଖିଅ ଛିଣ୍ଡି ଯାଉଛି ସେଇଠି ସେମାନେ ହଠାତ୍ ଶିଖରରୁ ଅତଳରେ ପତିତ ହେଲା ଭଳି ମନେ କରୁଛନ୍ତି ।[୬୦]

ସମ୍ଭବତଃ କବି, ଦର୍ଶନର ଛାତ୍ର ହୋଇଥିବାରୁ ସ୍ୱପ୍ନ ତତ୍ତ୍ୱର ଦର୍ଶନ ବା ମନୋବିଦ୍ୟା ଜାଣି ତାହାକୁ ଉଚିତ ସ୍ଥଳରେ କାବ୍ୟ ମାଳେ ବିନିଯୋଗ କରିଛନ୍ତି । ତେଣୁ ଏହାର ଉତ୍ସ, ଦର୍ଶନ ଜ୍ଞାନର ପ୍ରଭାବରୁ ବୋଲି ପ୍ରତୀୟମାନ ହୁଏ ।

ପୁନଶ୍ଚ କବି, କୋଣାର୍କେ କାବ୍ୟର ଦ୍ୱାଦଶ ଶ୍ଲୋକରେ ଯେଉଁ ସ୍ୱପ୍ନ ଶବର ସଂସ୍ଥାନ କରିଛନ୍ତି ତାହାର କଳ୍ପନା-ଭୂମିରେ ଇଂରେଜ କବି କୋଲରିଜଙ୍କ **Kubla Khan** କବିତାର କେତୋଟି ପଂକ୍ତିର ସଂଭାବ୍ୟ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ।[୬୧]

---

୬୦ । ଯାପନେ ଲାଗିବ ନନ୍ଦନ ବାସ୍ପ ବାଳୁତ ନଦେ
ଲାଗିବ ଶିଖର୍ ପଡ଼ୁଛ କବା ସାଗର ପଦେ ।
ଧୀରେ ଧୀରେ ଆସି ସୁଷୁପ୍ତି ଘୋଟିଯିବରେ, ଧନ
ରୁହଁ ପୁଣି ନନ୍ଦ ଝଂକରେ ଉଠିବ ହେ ସ୍ୱପନ ।
ଘନଘନ ନାଦେ ପିଣ୍ଡିବ ଖାଦ୍ୟ ଭେଷ ନନାଦ
ହୃପନେ ସ୍ୱପନ ମିଶିବ, ହେବ ପରାଣେ ମୁଦ ।
(କୋଣାର୍କେ-୨୧/୪୮୧-୮୬)

୬୧ । And from this chasm, with ceaseless turmoil seething
As if this earth in fast thick pants were breathing,
A mighty fountain momently was forced:
Amid whose swift half-intermitted burst
Huge fragments vaulted like rebounding hail,
Or chaffy grain beneath the thresher's flail;

ଏତଦ୍‌ଭିନ୍ନ, ବାଲ୍ମିତ କାଳରୁ ଭେନସ୍ ପ୍ରତି ଉକ୍ତି ଉଠିଥିବା ଅଖଣ୍ଡ ଆତ୍ମୀୟତା କବି ବାଇରନଙ୍କ ଅଭିବ୍ୟକ୍ତିରେ ଯେମିତି ଧରା ଦେଇଛି ଏବଂ ସେଇଠୁ ସେ ଯେମିତି ଗ୍ରୀସର ସ୍ଥାପତ୍ୟ-ଶ୍ରୀ ଓ କଳାନୈପୁଣ୍ୟ ସହିତ ଆପଣା ଆତ୍ମାକୁ ମିଶେଇ ଦେଇଛନ୍ତି; ମାଳକଣ୍ଠ ଅନୁରୂପ ଭାବେ କୋଣାର୍କରୁ ସିଧା ସଳଖ ଓଡ଼ିଆ ଐତିହ୍ୟର ଗୌରବାନ୍ୱିତ ଭୂମିକା ସଂଗେ ଆତ୍ମାର ସଂପର୍କକୁ ଖୋଜିବା ଲାଗି ନିଷ୍ଠାପର ଅଭିଳାଷ ପୋଷଣ କରିଛନ୍ତି । ଦୁଇ କବିଙ୍କ ପଂକ୍ତି ଚୟରେ ଅଭିବ୍ୟକ୍ତିର ସାମଞ୍ଜସ୍ୟ ନିକଟତମ ବୋଧ ହେଉ ନ ଥିଲେ ବି ଦୃଷ୍ଟି ଭଂଗୀରେ ତାରତମ୍ୟ ନାହିଁ । ଏପରି ଦୃଷ୍ଟିକୋଣ ସମ୍ଭବତଃ ବାଇରନଙ୍କ ପରିଚୟର ପ୍ରଭାବ ହୋଇପାରେ । [୬୨]

ସୁତରାଂ ମାଳକଂଠଙ୍କ କାବ୍ୟର କଥାବସ୍ତୁରେ ପାଶ୍ଚାତ୍ୟା-ନୁସରଣର କବି-ସୁଲଭ ଅନୁରାଗ ନାହିଁ ବରଂ ଅଛି ଆଭିମୁଖ୍ୟ ଓ ସ୍ଥଳ ବିଶେଷରେ ଶବ୍ଦ-ସଜ୍ଜାର ଅନୁସରଣ ଓ ଅବଲମ୍ବନ ।

---

**And' mid these dancing rocks at once and ever**
**It flung up momently the sacred river.**
**(Coleridge – Kubla Khan)**

ତୁଳନୀୟ—
ହିମ-ତରଂଗିଣୀ ବହିଇ ରୁଦ୍ର ମରୁ-ପ୍ରସାରେ
ତୁହିନ-ଶକଳ ଭାସଇ ଶିବ୍ର ଚଂଡ଼ାଂଶୁକରେ
କାଳ ସଂଗେ ଜଳ ଆସଇ ଭାସି ହିମ ଶିଖରୁ,
ତୁହିନ-ପୀଡ଼ନେ ଯେସନେ ଖଂଡ଼ ଶଇଳ ଗୁରୁ ।
ଉପକଂଠେ ପୁଣି ଉଷରେ ହିମ ଯାଏ ତରଳ,
ତରଣୀ-ସଂପଦ ତଟିମା ବକ୍ଷେ ଯାଏଟି ସରି ।
(କୋଣାର୍କେ-ଶ୍ଳୋକ ୧୨/୨୭୩-୭୮)

୬୨ । **Byron-Child Harold's Pilgrimage-Conto IV-XVIII**

ତୁଳନୀୟ—(ମାଳକଣ୍ଠ-କୋଣାର୍କେ-୬ ଶ୍ଳୋକ)

ତେଣୁ ନୀଳକଣ୍ଠଙ୍କ କାବ୍ୟ-କବିତାରେ ପାଶ୍ଚାତ୍ୟ ପ୍ରଭାବର ସ୍ୱରୂପ ମୁଖ୍ୟତଃ ଅନୁବାଦ ଓ ଆତ୍ମମୁଖ୍ୟ ଭଙ୍ଗିକ ।

## କାବ୍ୟ-ଭାଷା : ଅଭିବ୍ୟକ୍ତିର ଧାରା

'ସମୟ ଓ ଅନୁଭବ ଅନୁଯାୟୀ ମଣିଷ ଉପଯୋଗୀ ଭାଷା ପ୍ରୟୋଗ କରିଥାଏ । କାରଣ ଭାଷା, ତା'ର ଭାବବାହୀ ଅବଲମ୍ବନ······ସାହିତ୍ୟିକ, ପ୍ରତିଭାର କାଉଁରୀ ସ୍ପର୍ଶରେ ଭାଷାକୁ ମର୍ମ୍ମସ୍ପର୍ଶୀ ରୋଚକ ଓ ରସପ୍ରାପ୍ତ କରି ତୋଳିଥାଏ । ଭାଷା ଜରିଆରେ ଲେଖକର ଚିନ୍ତା, ଅର୍ଥ-ତାତ୍ପର୍ଯ୍ୟ, ଚିତ୍ର-ରୂପ, ପ୍ରତୀକ, ବ୍ୟଂଜନା ଓ ସାଂଗୀତିକତା ସବୁ କିଛି ଲାଭ କରିଯାଇଥାଏ ।'[୬୩]

ସେହି ଦୃଷ୍ଟିରୁ ଦେଖିଲେ ମନେ ହୁଏ ନୀଳକଂଠଙ୍କ କାବ୍ୟ-ଭାଷା ତାଙ୍କ ଅନୁଭବର ଅନୁସାରୀ ହୋଇଛି । କବିଙ୍କ ଅନୁଭବର ଆୟତ୍ତ-ଭୂମିରେ ଚିନ୍ତନ-ଧର୍ମିତାର ପ୍ରଭାବ ବେଶୀ ଥିବାରୁ ତାଙ୍କ ଭାଷା ଗମ୍ଭୀର ଶବ୍ଦ-ସମ୍ଭାର ବଳରେ ପରିଗଠିତ । ଅନେକ କ୍ଷେତ୍ରରେ ମଧ୍ୟ ତରଳ ଆବେଗ ପ୍ରବଣତାର ଆଧିକ୍ୟ ହେତୁ କବି-ଭାଷା, ସରଳ ଗୀତି-ଧର୍ମିତାକୁ ବରଣ କରିଛି ଏବଂ ନିର୍ବାଧ ନିର୍ଝର ଭଳି ପ୍ରବହମାନ ହୋଇପାରିଛି । 'ରାମ ଚଂଡ଼ୀ ଠାରେ ରାତି' (କୋଣାର୍କେ) ଅନ୍ତର୍ଗତ ପ୍ରଥମ ଛ'ଟି ଶ୍ଳୋକ; ମାୟାଦେବୀରେ ସ୍ଥାନସ୍ଥ ହୋଇଥିବା କେତୋଟି ଗୀତ ବା ଚଉତିଶା ଏବଂ ମାୟା-ନରସିଂହ ବା ମାୟା-ଜଂବୁ ଜେମାଂକ କଥୋପ-କଥନରେ ସରଳ ଗୀତି ଧର୍ମିତା ଓ ପ୍ରବହମାନତା ଲକ୍ଷଣୀୟ । ପୁଣି ଖାରବେଳ କାବ୍ୟର ୩ୟ ଖ୍ରନ୍ଦରୁ ୨୫ଶ ଖ୍ରନ୍ଦ ଓ 'ଦାସ-ନାଏକ' କାବ୍ୟର ପୂର୍ଣ୍ଣାଂଗ ପରିକଳ୍ପନାରେ ଏଇ ସରଳ ପ୍ରକାଶ ଭଂଗୀର ଦୃଷ୍ଟାନ୍ତ ଲକ୍ଷ୍ୟ କରିଯାଇଥାଏ ।

---

୬୩ । କ୍ଷେତ୍ରବାସୀ ନାୟକ-ସାହିତ୍ୟର ସାମାନ୍ୟ କଥନ (ଭାବ ପାଇଁ ଭାଷା)-ପୃ ୪୧

ମାତ୍ର ଅନ୍ୟତ୍ର ବହୁ ସ୍ଥଳରେ କବିଙ୍କର ଭାଷା ଗମ୍ଭୀର ରବମୟ୍ଯ ଶବ୍ଦ-ଶକ୍ତି ଯେମିତ ଭାବର ଅନୁଗାମୀ ହୋଇଛି । ତତ୍‌ସମ ଓ ତଦ୍‌ଭବ ଶବ୍ଦର ପ୍ରଚୁର ବ୍ୟବହାର ଏବଂ ସମସ୍ତ-ପଦର ବହୁଳ ପ୍ରୟୋଗ କବିଂକ କାବ୍ୟ-ଭାଷାକୁ ପରିପୃଷ୍ଟ କରିଛି । କବି କେତେ ଗୁଡ଼ିଏ ପ୍ରିୟ ଶବ୍ଦର ଆକର୍ଷଣରୁ ଆପଣାକୁ ନିରାସକ୍ତ ରଖି ପାରିନାହାଁନ୍ତି । ତୁଂଗ, ମୟୂଖ, ରଭସ, ପ୍ରଚଂଡ଼, ବିଶାଳ, ଗୁରୁ, ବିଭାସ, ଅନଂତ, ଉପାଂତ, ବିସାର, ପ୍ରସାର, ତମ, ତାମସ—ଇତ୍ୟାଦିର ଯଥା ତଥା ବ୍ୟବହାର କବି କରିଛନ୍ତି । 'କୋଣାର୍କେ' ର ପ୍ରଥମାର୍ଦ୍ଧକୁ ଅନୁଧ୍ୟାନ କଲେ, କବି ଏହି ଶବ୍ଦ-ଗୁଡ଼ିକ ଭିତରୁ ତୁଂଗ ଶବ୍ଦଟିକୁ ପନ୍ଦରଥର, ପ୍ରସାର/ତାମସ/ବିଶାଳ'କୁ ଦଶଥର ଲେଖାଁ ଏବଂ 'ମୟୂଖ'କୁ ପାଞ୍ଚଥର—ଏମିତି ପ୍ରାୟ ଅନ୍ୟାନ୍ୟ ଶବ୍ଦର ପୌନପୌନିକ ପ୍ରୟୋଗ କରିଥିବା ପରିସଂଖ୍ୟାନରୁ ଜଣାଯାଏ । ଏହାଦ୍ୱାରା ଏମାନଙ୍କର ପଦ-ମର୍ଯ୍ୟାଦା କବି ନଷ୍ଟ କରିବା ସଂଗେ ସଂଗେ କାବ୍ୟ-ଗ୍ରହୀତାଂକ ପାଇଁ କ୍ଳାନ୍ତିକର ଅବସ୍ଥା ତିଆରିଛନ୍ତି ।

କବିଂକ ବିଭିନ୍ନ କାବ୍ୟର ସ୍ତବକ ସମୂହ ଅନୁପାତ ରକ୍ଷା କରି ଗଢ଼ା ହୋଇ ନାହାଁନ୍ତି; ପ୍ରେରଣା-ଦାୟୀରେ ସେମାନେ ଗଠିତ ! । କେତେକ କ୍ଷେତ୍ରରେ ପଦାବଳି କ୍ଳିଷ୍ଟ ଓ ବିଚ୍ଛିନ୍ନ ହୋଇଥିବାରୁ ସେମାନଂକ ସମୂହ ଅର୍ଥ ବୋଧଗମ୍ୟ ହେବାରେ ବାଧା ଜନ୍ମୁଛି ।[୭୪]

---

୭୪ । ଯଉବନ ଜଳେ ଅନଂତ ବିଭାସେ
ତରୁଣ ବିକାଶେ ଅନଂତ ମୁଖେ
କରମ ସଂଯମ ଗରବ ବିନୟ
ତରୁଣେ ଖେଳଇ ଅନଂତ ସୁଖେ ।
(କୋଣାର୍କେ-୪ ର୍ଥ)

କବିଙ୍କର ଅଭିବ୍ୟକ୍ତି ଧାରା ଏକାରକମର ହୋଇନାହିଁ । ସମଷ୍ଟିତରେ ସେ ଶ୍ଳୋକ, ଛନ୍ଦ, ବା ସର୍ଗଗୁଡ଼ିକୁ ଗଢ଼ି ନାହାଁନ୍ତି । କବି ନାମ ବିଭବ ଅପେକ୍ଷା ବିଷମରେ ଅତି ବିଶ୍ବାସୀ;[୬୫] ତେଣୁ ବୋଧହୁଏ ବିଭିନ୍ନତାର ସୁଷମା ତାଙ୍କ କାବ୍ୟ-ପ୍ରକାଶରେ ଲକ୍ଷ୍ୟ-କରାଯାଇଛି ।

ତାଙ୍କ ଭାଷା ପ୍ରୟୋଗ କ୍ଷେତ୍ରରେ ଉପଧା ମିଳନ ପ୍ରତି ଆନ୍ତରିକ ପ୍ରୟାସ ନାହିଁ କିଂବା କେବଳ ଭାଷାର ସ୍ନିଗ୍ଧତା ଦ୍ୱାରା ଚିତ୍ତହରଣ କରିବାର ଚେଷ୍ଟା ମଧ୍ୟ କବି କରି ନାହାଁନ୍ତି । ଭାବର ସ୍ୱଚ୍ଛଳ ପରିସ୍ଫୁଟନ ପାଇଁ କବି, କାବ୍ୟ-ଲେଖାରେ ନାଟକୀୟ ସଂଳାପ ରୀତି ଅବଲମ୍ବନ କରିଛନ୍ତି । 'କୋଣାର୍କେ' ରେ ଏହି ରୀତି ଏବଂ ଅନ୍ୟାନ୍ୟ କାବ୍ୟମାନଙ୍କରେ ଆବଶ୍ୟକ ମତେ ଏହାର ବିନିଯୋଗ କରାଯାଇଛି ।

କବିଙ୍କ କାବ୍ୟରେ ଶବ୍ଦ-ପ୍ରତିମାଗୁଡ଼ିକ ସ୍ଥଳ ବିଶେଷରେ ସୁନ୍ଦର ଉପମା ଓ ଚିତ୍ରରୂପର ସ୍ୱାଦ୍ୟ ପରିଚୟ ଦେଇଛନ୍ତି । ତାଙ୍କର ଶବ୍ଦାନୁଭୂତି ସୂକ୍ଷ୍ମ ଓ ଯଥାର୍ଥ ହୋଇଥିବାରୁ ସେ ଷେତ୍ର ଧେନ ଉଲ୍ଲେଖଯୋଗ୍ୟ ଶବ୍ଦ ଚିତ୍ର ରଚନା କରି ପାରିଛନ୍ତି । ବହୁ ସ୍ଥାନରେ କବି, ଶ୍ରୁତି ନିର୍ଭର କଳ୍ପନା ଉପରେ ନିର୍ଭର କରିଛନ୍ତି । ଯେମିତି ଝଡ଼ର ଝଂକାରରୁ ସମରର ହୁଂକାର । 'କୋଣାର୍କେ' କାବ୍ୟରେ ଏମିତି ଶ୍ରୁତି ସହିତ କଳ୍ପନାର ସହଯୋଗିତା ଅଧିକ;

---

୬୫ । ମମ ବଇଭବେ ଅଛଇ କି ସୁଖ
ବିଷମେ ମିନା ଏ ପରାଣ ଖେଳେ ?
ଦିବସେ ହସଇ କାନନ ଧରଣୀ
ରଜନୀ-ତାମସ-ସ୍ମରଣ ବଳେ ।
(ମାୟାଦେବୀ—ଉପସଂହାର)

ତାହାଙ୍କ ନୀଳକଣ୍ଠଙ୍କ କବିତାକୁ ସ୍ୱତନ୍ତ୍ର କରିଛି ଓ ମହତ ମୂଲ୍ୟ ଦେଇଛି ।

କବି, କରି ସୁକୁମାର ଶବ୍ଦ-ପ୍ରତିମା ବ୍ୟବହାରରେ ଅଭିବ୍ୟକ୍ତିକୁ ମର୍ମଛେଦୀ କରିପାରିଛନ୍ତି । କେବଳ ସାଦୃଶ୍ୟ-କଥନ ଦେଇ ଭାବ-ରୂପ ବା ଚିତ୍ର-ସଂସ୍ଥାନ ଶୈଳୀ ଉପରେ ସେ ଏକାନ୍ତ ନିର୍ଭର ଶୀଳ ହୋଇ ନାହାଁନ୍ତି । ପାଶ୍ଚାତ୍ୟ କ୍ଲାସିକାଲ ଇମେଜ୍; କୌଣସି ଆବେଗ ବା ବସ୍ତୁର ସମାନ୍ତର-ସାଦୃଶ୍ୟଭିତ୍ତିକ ଅଳଂକରଣ ହୋଇ ପରିଣତିରେ ଏକ ଭାବ-ସତ୍ତା ଫୁଟେଇଲା ପରି କିଂବା ପ୍ରାଚ୍ୟ-କ୍ଲସିକାଲ ଇମେଜ୍, ଉପମାନ ଓ ଉପମେୟ ମଧ୍ୟରେ ଥିବା ସୂକ୍ଷ୍ମ ସମାନ୍ତରତାକୁ ରକ୍ଷା କରି ପରିଣତିରେ ଶ୍ରୁତି ବା ଦୃଶ୍ୟ ସଂଗତି ଆଣିବାକୁ ଚେଷ୍ଟା କଲାଭଳି[୬୬] କବି ନୀଳକଂଠ, ସେହି ପ୍ରାଚୀନ କ୍ଲାସିକାଲ ପଦ୍ଧତିର ବିଶ୍ୱସ୍ତ ଅନୁସରଣ କରି ସର୍ବଦା ଆପଣା କାବ୍ୟ-ପ୍ରକାଶରେ ସେପରି ଚିତ୍ର କଳ୍ପନା କରି ନାହାଁନ୍ତି । ଉପମା, ରୂପକ, ସୃଷ୍ଟି ସତ୍ତ୍ୱେ ମଧ୍ୟ ସେ କେତେକ ଚିତ୍ର-କଳ୍ପର ବ୍ୟବହାର ଦେଖାଇ ପ୍ରକାଶ ଧାରାରେ ଅଭିନବତା ଆଣିଛନ୍ତି ।

---

୬୬ । The western classical image is a beautiful decoration enhancing the vividness of a scene or of an emotion by a parallel analogy meant to create a general impression......In the classical image of India, the parallelism between *upamana* and *upameya* is usualy minute and faithfully observed. (Robert Antoine, S. J.—Classical Forms of the Simile-Jadavpur Journal of Comparative Literature Vol IX-Pp. 22.

ପ୍ରଥମରୁ କବି, ନଷ୍ଟ ବାତ୍ୟାର ନଶିଲଗ୍ନରେ ଉଦ୍‌ବେଳିତ ପିତାମାତାଙ୍କ ଅଶାନ୍ତ ମନର ରୂପଟିକୁ ଫୁଟାଇବାକୁ ଯାଇ ଯେଉଁ 'ଜାହାଜ' ଶବ୍ଦ-କଳ୍ପଟି ବ୍ୟବହାର କରିଛନ୍ତି ତାହା ସେମାନଙ୍କ ସମସ୍ତ ଆଶା ଓ ଅଭିଳାଷର ପ୍ରତୀକ ରୂପେ ଯଥାର୍ଥ ଭାବ ରୂପ ସୃଷ୍ଟି କରିପାରିଛି । ପୁଣି ତାହାର ପ୍ରୟୋଗକୁ 'ହୃଦ-ସାଗର' ରୂପକ ଅବଲମ୍ବନରେ ସାର୍ଥକ ଓ ଯୁକ୍ତ ସିଦ୍ଧ କରାଯାଇଛି ।[୬୭]

ଖାଟି-କଂକାଳ ପରି ବର୍ତ୍ତମାନ ଜୀର୍ଣ୍ଣ ମୁଖଶାଳାକୁ 'ପ୍ରଭୁ ପୁରୁଷଙ୍କ ପ୍ରେତ'—ଏପରି ବିମୂର୍ତ୍ତ ଶବ୍ଦ-କଳ୍ପ ଦ୍ୱାରା ଅଭିବ୍ୟକ୍ତ କରାଯାଇ କାବ୍ୟିକ ସମ୍ମୋହନ ସୃଷ୍ଟି କରାଯାଇଛି ।[୬୮]

'ମରଣ' ଶବ୍ଦ ମହାନ 'ଶ୍ମଶାନ' ର ସହଯୋଗିତାରେ ଶବ୍ଦ କଳ୍ପନାର ଏକ ସଂଗତାର୍ଥ ଅଣାଯାଇଛି । ଶ୍ମଶାନ, ଶୂନ୍ୟତା ଓ ଭଂଗୁରତାର ଲୀଳାଭୂମି; ମରଣ, ଶୂନ୍ୟ ଓ ମୃତ । 'ଯଜ୍ଞ-ଧୂମ-ଶିଖ' ର ସମସ୍ତ ପଦଟି ତତ୍‌କ୍ଷଣାତ୍ ବୈଦିକ ତଥା ବ୍ରାହ୍ମଣ୍ୟ-ଧର୍ମର ଉତ୍‌ଥାନକୁ ପ୍ରତିଫଳିତ କରିଛି । ସୁତରାଂ ଏହି ସମସ୍ତ-ପଦ ଏକ ଧର୍ମ ମତର ପ୍ରତୀକ ରୂପେ ଭାବ-ପ୍ରକାଶ ପାଇଁ ଯଥେଷ୍ଟ ହୋଇ ପାରିଛି । 'ଅଭିମନ୍ୟୁ-କଳା' ର ଉଲ୍ଲେଖ ଭିତରେ

---

୬୭ । ଫାଟିଯାଉଥିବ ଜାହାଜ ତାଙ୍କ ହୃଦ ସାଗରେ ।
(କୋଣାର୍କ-ପଂକ୍ତି ୧୬)

୬୮ । ଜୀର୍ଣ୍ଣ ମୁଖ ଶାଳା ଉଠିଛି ଖାଟିଙ୍କକାଳ ପରି
ପ୍ରଭୁ ପୁରୁଷଙ୍କ ପ୍ରେତ ସେ, ଏବେ ଦିଶେ ବାହାର ।
(କୋଣାର୍କ-ପଂକ୍ତି-୧୯୦)

ଶାରଭୂର ବ୍ୟଂଜନା ନହୁଚ । ଏଠି ଚଳ-କଳ୍ପଟି ମିଥ୍‌ର ଆଶ୍ରୟରେ ଗଢ଼ା ହୋଇଛି ।୬୯

ପୁଣି ନରସିଂହ ଦର୍ଶନରେ ଅପଲକା ରମଣୀ ମାୟାଦେବୀର ଭାବ ଓ ଚଳ ରୂପଟିକୁ ପ୍ରକାଶ କରିବାକୁ ଯାଇ କବି କାନ୍ଥ-ଲେଖା' ଶବ୍ଦ-ପ୍ରତିମାର ସାହାଯ୍ୟ ନେଇଛନ୍ତି । ଏହି ଶବ୍ଦ-ପ୍ରତିମାଟି ଚଳ-ପ୍ରତିମାରେ ରୂପାନ୍ତରୀତ ହୋଇ, ତତ୍‌କାଳୀନ ମାୟାଦେବୀଂକ ମାନସିକ ଅବସ୍ଥାର ଚଳ-କଳ୍ପରୂପେ ଅବିକଳ ବାସ୍ତବ ଭାବ ପ୍ରକଟିତ କରିଛି । ମାୟାଦେବୀଂକ ମନ ଓ ସ୍ଥିତିର ସ୍ଥିରତାକୁ ବୁଝିବା ପାଇଁ "କାନ୍ଥ-ଲେଖା" କଳ୍ପନାଟି ଯଥେଷ୍ଟ ନୁହେଁ କି ?

କବି ପରଂପରାନୁସରଣରେ ଅମିତ୍ରାକ୍ଷର ଛଂଦ, ଭଂଜୀୟ ଛନ୍ଦ ଓ ରାଗ-ରାଗିଣୀ ବ୍ୟବହାର କରିଛନ୍ତି । 'କୋଣାର୍କେ' ରେ ସଂସ୍କୃତ ଗୁରୁ ଲଘୁ ନୟମର ପ୍ରୟୋଗ କରାଯାଇଛି । 'ଖାରବେଳ' ରେ ବିଭିନ୍ନ ପ୍ରାଚୀନ ରାଗ-ରାଗିଣୀର ବିନ୍ୟାସ ଏବଂ 'ପ୍ରଣମ୍ୟିମା' ର ସପ୍ତମ ଛଂଦରେ ଅମିତ୍ରାକ୍ଷର ଛନ୍ଦର ବ୍ୟବହାର କବି କରିଛନ୍ତି ।

---

୬୯ । ଶାରଦ ଶ୍ମଶାନ ହସିବ ତବ ସ୍ୱପନ ଖେଳେ ।
(କୋଣାର୍କେ-ପଂକ୍ତି-୨୪୬)
ଯଜ୍ଞ-ଧୂମ-ଶିଖ-ଉଠିବ ପୁଣି ନଭ ବିତାନେ ।
(ତବୈବ-ପଂକ୍ତି-୩୨୦)
ଅଭିମନ୍ୟୁ-କଳା ଦେଖାଇ ଗବ୍ଦ ସ୍ମେରବଦନେ ।
(ତବୈବ-ପଂକ୍ତି-୫୪୩)
କାଂଥ-ଲେଖା ପରି ସ୍ଥିର ସେ ରମଣୀ
ଅଛଥି ଆସନ ଆଗମ-ସୁଖେ ।
(ମାୟାଦେବୀ-ପଂକ୍ତି ୨୫୪)

ଏତଦ୍‌ଭିନ୍ନ କବିଂକର ଅଭିବ୍ୟକ୍ତ-ଧାରାରେ ଉପମା ବିନ୍ୟାସର ବିବିଧତା ଓ ବିଦଗ୍‌ଧତା ମଧ୍ୟ ଲକ୍ଷ୍ୟ କରାଯାଇ ଥାଏ । କବି, ବିନ୍ୟାସ-କ୍ଷେତ୍ରରେ ଓ ଉପମା-ଚୟନରେ ପୂର୍ଣ୍ଣତଃ ପରଂପରାର ଅନୁସାରୀ ହୋଇ ନାହାଁନ୍ତି । ରୁଚି ଓ କଳ୍ପନା ଅନୁପ୍ରେରିତ ନୂତନତା ସେ ବିଭିନ୍ନ କ୍ଷେତ୍ରରେ ସୃଷ୍ଟି କରିଛନ୍ତି । ଉପମା-ବିନ୍ୟାସର ସାମାନ୍ୟ କେତୋଟି ଦୃଷ୍ଟାନ୍ତ ତାହାର ପରିଚୟ ଦେବ ।[୭°]

ସୁତରାଂ ଏଥିରୁ ଅନୁମେୟ ଯେ କବିଙ୍କର କାବ୍ୟ-ଭାଷା ଓ ଅଭିବ୍ୟକ୍ତିର ଧାରା ସ୍ୱତନ୍ତ୍ର; କାରଣ ତାଙ୍କର କବିଦୃଷ୍ଟି । ନୀଳକଣ୍ଠଙ୍କ ଠାରେ ବୋଧ-ଦୃଷ୍ଟିର ସଘନ ପ୍ରତିଫଳନ ପରିଲକ୍ଷିତ ହୁଏ ।

---

୭° । କ) ପୁଲିନ-ଶଇଳେ ତରଂଗ ସମାନ
ଭାଜଇ ଅରାତି ଲଲାଟ ତୋଳି,
ଶାଳ ବନେ ଭୃଂଗ ତପନ-ସମାନ
ଅହଂକାର ମଦ ପଶଇ ଉରି ।
(ମାୟାଦେବୀ-୧ମ ସର୍ଗ/୧୭୫ ପଂକ୍ତି)

ଖ) ବିସ୍ତାରିତ ନେତ୍ର କୁଂଚିତ ଅଳପେ,
ଗରବ ବିକାଶେ ନୟନ-ତାରା,
ଅଜେୟ ହୃଦୟ ଫୁଟଇ ଲପନେ,
ଦୁର୍ଦ୍ଦିନେ ଯେସନ ପ୍ରାଂତର-ଧାରା ।
(ମାୟାଦେବୀ-୩ୟ ସର୍ଗ/୨୧୧-୧୨ ପଂକ୍ତି)

ଗ) ତରୁଡାଳେ ଫୁଟେ ପତର୍ନି ନିସ୍ୱନ,
ପ୍ରଣୟି ପରାଣେ ସ୍ମରଣ ଯେସନ,
କଳ କଳେ ନଦୀ ଦୂରେ ବହିଯାଏ;
ନବଯୋଗି ହୃଦେ ବାସନା ପରାଏ;
(ଖାରବେଳ-୫ମ ଛାଂଦ)

ପ୍ରଜ୍ଞା କିଂବା ରସ-ଦୃଷ୍ଟି ଅପେକ୍ଷା ଏହାର ପ୍ରକ୍ଷେପ ତାଙ୍କ କାବ୍ୟ-କବିତାରେ ବେଶୀ । ତାଙ୍କ ଲେଖାରେ ରସ-ଦୃଷ୍ଟିର ଆଧିକ୍ୟ ଥିଲେ, ହୁଏତ କବି ଉପଭୋଗ୍ୟର ଆବିଷ୍କାର ଭିତରେ ଆପଣାକୁ ଏକାନ୍ତ ଭାବେ ନିମଜ୍ଜିତ କରି ଦେଇଥା'ନ୍ତେ କିଂବା ପ୍ରଜ୍ଞା-ଦୃଷ୍ଟିର ଅନାହତ ପୋଷକତା କରୁଥିଲେ ସେ ହୁଏତ ପ୍ରତ୍ୟେକ ବସ୍ତୁରେ ଆଦି ନିଦାନ ବା ଅନନ୍ତ ଅବସ୍ଥିତିର କଳ୍ପନା କରୁଥାନ୍ତେ କିଂତୁ ଏ' ସବୁର ପ୍ରୟାସ ଅଳ୍ପ । ବୋଧ ଦୃଷ୍ଟି ବଳରେ ବିଭିନ୍ନ ବସ୍ତୁ ବା ଅନୁଭବ-କଥାର ଚତୁଃପାର୍ଶ୍ୱ ଏବଂ ଏହାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଅନ୍ୱେଷଣରେ କବି-ମନ ଚଂଚଳ ହୋଇ ଉଠିଛି । 'କୋଣାର୍କେ' ଓ 'ଖାରବେଳ' କାବ୍ୟର ବିଭିନ୍ନ ଛନ୍ଦରେ ଉଚ୍ଚାରିତ ଅତୀତ ଅନ୍ୱେଷଣ ପ୍ରବୃତ୍ତି ଏହାର ବଳିଷ୍ଠ ଦୃଷ୍ଟାନ୍ତ । ତେଣୁ କବିଙ୍କର କାବ୍ୟ-ଭାଷା, ପ୍ରଜ୍ଞାଦୃଷ୍ଟି, ବୋଧ-ଦୃଷ୍ଟି ଓ ରସ ଦୃଷ୍ଟିର ଏକ ଉଚିତର ସମନ୍ୱୟରେ ପରିଗଠିତ । ବୋଧ ଦୃଷ୍ଟି ଏହାର ମଧ୍ୟ ବିନ୍ଦୁ । ନୀଳକଣ୍ଠ ବୋଧ-ଦୃଷ୍ଟି ସଂପନ୍ନ କବି ଏବଂ ଦୃଷ୍ଟି ଅନୁଗତ ତାଙ୍କର ଭାଷା ।

## ଉତ୍ତରକାଳକୁ କବି ନୀଳକଂଠଙ୍କ ପ୍ରେରଣା

'କୋଣାର୍କେ ଉଷା' (୧୮୯୫) ର କବି ଗୋପାଳବଲ୍ଲଭ କୋଣାର୍କ ଭୂମିରେ ନବ ଯୁଗର ଉନ୍ମେଷ ଦେଖି ଯେଉଁ ସମ୍ଭାବ୍ୟ ଅଭିଳାଷ ପୋଷଣ କରିଥିଲେ ତାହା ଊନବିଂଶ ଶତାବ୍ଦୀର ଜାତୀୟତା-ବୋଧର ପ୍ରାଣ କଳ୍ପକୁ ପ୍ରକଟିତ କରିଥିଲା । ବ୍ରିଟିଶ ଶାସନ ଓ ଉପନିବେଶ ଫଳରେ ଜାତି ଓ ଦେଶ ନିର୍ମାଣ ଲାଗି ତତ୍ପରତା ଏ ମାଟିରେ ପ୍ରକାଶ ପାଇବା ଉଚିତ ଏବଂ ବ୍ରିଟିଶ

ସ୍ପର୍ଶ ଲାଭ କରି ଆଫ୍ରିକା, ଅଷ୍ଟ୍ରେଲିଆ, ଆମେରିକା ଇତ୍ୟାଦି ଦେଶ ନବ-ଯୌବନ ଲାଭ କଲା ପରି ଓଡ଼ିଶା ତାହାର ସୁଫଳ ଭୋଗ କରୁ ବୋଲି; କବି ଗୋପାଳବଲ୍ଲଭ ଆଶା ପୋଷଣ କରିଥିଲେ । ଜାତିର ଉନ୍ନତି ପାଇଁ କବିଙ୍କର ଏଇ ସଦିଚ୍ଛା ପାଶ୍ଚାତ୍ୟ ପ୍ରେରଣାର ଏକ କାରଣ । ପାଶ୍ଚାତ୍ୟକୁ ଦୃଷ୍ଟାନ୍ତ କରି ଜାତି ଗଢ଼ିବା ଲାଗି ଆତୁରତା ଏଠି ପ୍ରବଳ ।

ମାତ୍ର ନୀଳକଣ୍ଠଙ୍କ ଚିନ୍ତାଧାରା ଭିନ୍ନ ମୁଖୀ । ଅବଶ୍ୟ କୋଣାର୍କକୁ ପୀଠିକା କରି ଜାତି ପ୍ରତି ଦୃଷ୍ଟି ଦେବାଭଳି କବି-ପ୍ରୟାସ ପୋଷଣରେ ନୀଳକଣ୍ଠ ହେଉଛନ୍ତି ଉତ୍ତରସୂରୀ । ଗୋପାଳ-ବଲ୍ଲଭଙ୍କ ଠାରେ ଏହା ପ୍ରଥମେ ପରିଲକ୍ଷିତ । ସେହି ଦୃଷ୍ଟିରୁ 'କୋଣାର୍କେ' କାବ୍ୟରେ 'କୋଣାର୍କେ ଉଷା' କବିତାର ଅଳସ ଅନୁଦାନ ଅଛି ବୋଲି କୁହାଯାଇପାରେ । କିନ୍ତୁ ଜାତୀୟ-ପ୍ରାଣ-ପ୍ରବଣତା ପ୍ରକଟନରେ ପାଶ୍ଚାତ୍ୟ ତାଙ୍କର ଦୃଷ୍ଟାନ୍ତ ନୁହେଁ । ବରଂ ପାଶ୍ଚାତ୍ୟ-ପ୍ରତ୍ୟାଖ୍ୟାନ ଭାବ ନୀଳକଣ୍ଠଙ୍କର କବି ଚିତ୍ତରେ ସଂକ୍ରମିତ ।[୭୧]

ତେଣୁ ନୀଳକଣ୍ଠ; ଊନବିଂଶ ଶତାବ୍ଦୀର ଓଡ଼ିଆ କାବ୍ୟ-ଧାରାରେ ପ୍ରତିଫଳିତ ଜାତୀୟତା-ବୋଧର ଦାୟାଦ ନୁହଁନ୍ତି । ତଥାପି ପୂର୍ବବର୍ତ୍ତୀ କାବ୍ୟଧାରାର ଆତ୍ମମୁଖ୍ୟ ଓ ଅଭିବ୍ୟକ୍ତି

---

୭୧ । ପଶ୍ଚିମ ସଭ୍ୟତାର ଏସନ ରୀତି
କାହୁଁ ବୁଝିବେ ସେହୁ ସୁଗତ ନୀତି ?
ଜୀବନେ ଜାଣନ୍ତି ସେ ଆପଣା ସୁଖ;
କଥା କହନ୍ତି ସତେ ବକ ଧାର୍ମିକ ।

(ଖାରବେଳ—୧୨ ଶ ଛାନ୍ଦ)

ଠାରୁ ଖୁବ ବେଶୀ ପାର୍ଥକ୍ୟ ନୀଳକଂଠ ଓ ତାଂକ କାଳର କାବ୍ୟ-କବିତା ସୃଷ୍ଟି କରିଥିବା ମନେ ହୁଏନା ।

ରାଧାନାଥଂକ ନାୟକନାୟିକାମାନେ ଯବନ ଦେଶର ପାକ ପାର୍ବୀ; ଦାସନାଏକ ବା ପ୍ରେୟିମୀ ଓ ଆମ ଦେଶର ନୁହଁନ୍ତି । ରାଧାନାଥଂକ କାବ୍ୟ-କବିତାରେ ଐତିହାସିକ ଓ ପୌରାଣିକ ମିଥ୍ୟାର ଦୃଷ୍ଟାନ୍ତ ଥିଲା ପରି 'ମାୟାଦେବୀ' ରେ ବି ଐତିହାସିକ ତଥା ପୌରାଣିକ ମିଥ୍ୟା ବିଦ୍ୟମାନ । ରାଧାନାଥଙ୍କୁ ଓଭିଡ଼ଂକ କାବ୍ୟ-ଗାଥା ଯଥେଷ୍ଟ ଉପାଦାନ ଯୋଗାଇଥିଲାପରି ନୀଳକଂଠଙ୍କୁ ଟେନିସନ ଓ ସ୍କଟ ଇତ୍ୟାଦି ଇଂରେଜ କବି ଯଥା ସମ୍ଭବ ଭାବ-ସଂପଦ ଯୋଗାଇଛନ୍ତି । ଥିମ୍ ଓ ଅଭିବ୍ୟକ୍ତିରେ ନୀଳକଂଠ ଏକାବେଳକେ ନୂଆ ପଥ ତିଆରି କରି ନାହାଁନ୍ତି; ପରଂପରା ଉପରେ ଆପଣାକୁ ତିଆରିଛନ୍ତି । ଏପରି କି ଶିଶୁ କବିତା ରଚନାରେ ବି ନୀଳକଂଠ ନୂଆ ନୁହଁନ୍ତି, ମଧୁସୂଦନ ତାଂକର ପୂର୍ବସୂରୀ ।

ସୁତରାଂ ପୂର୍ବଜମାନଂକର ଅନୁଦାନରୁ ଆପଣା ରୁଚି ଅନୁଗତ ନୂତନତା ନେଇ ନୀଳକଂଠଂକ କାବ୍ୟ-କବିତା ରଚିତ । ଏହାଂକ କାବ୍ୟରେ ସତ୍ୟ ହେଉଛି ଉପାଖ୍ୟାନ; ମିଥ୍ୟା ହେଉଛି କବିତା । କିଂତୁ ପୂର୍ବଜ ରାଧାନାଥଂକ କାବ୍ୟରେ ସତ୍ୟ ହେଉଛି କବିତା, ମିଥ୍ୟା ହେଉଛି ଉପାଖ୍ୟାନ । ଏହି ବ୍ୟତିକ୍ରମ ହିଁ ହେଉଛି ନୀଳକଣ୍ଠଙ୍କ ସ୍ୱତନ୍ତ୍ରତା । ତେବେ ଏହା ସ୍ପଷ୍ଟ ଯେ କବିତା-ହୀନ କବିମନ ଉତ୍ତର କାଳର କବିକୁଳଂକୁ ପ୍ରେରଣା ଦାନରେ ଅକ୍ଷମ ହୋଇଛି । ବରଂ ଗୋଦାବରୀଶ ମିଶ୍ର ବା ଗୋପବନ୍ଧୁ ହେଉଛନ୍ତି ଉତ୍ତରଜଂକ ପ୍ରେରଣା ଦାତା; ନୀଳକଣ୍ଠ ନୁହଁନ୍ତି ।

କୋଣାର୍କ ପ୍ରତି ପରବର୍ତ୍ତୀ କାଳରେ ଅନେକ କବି ଆସକ୍ତ ହୋଇଛନ୍ତି । ତାହାର କାରଣ ବା ପଥଦ୍ରଷ୍ଟା ହିସାବରେ

ନୀଳକଣ୍ଠଙ୍କୁ ଗ୍ରହଣ କରାଯାଇ ନପାରେ । କୋଣାର୍କ ତ ସହଜେ କବିର ଏକ ଅବେଗ-ନିକେତନ, ସେଥିପ୍ରତି ଆକୃଷ୍ଟ ହେବା ମୂଳରେ ନୀଳକଣ୍ଠଙ୍କୁ ସ୍ୱୀକାର କରିବା ନିଷ୍ପ୍ରୟୋଜନ ।

ସୁତରାଂ ନୀଳକଣ୍ଠ ଓଡ଼ିଆ କାବ୍ୟ-ଜଗତର ପୁରୋଦ୍ରଷ୍ଟା ନୁହଁନ୍ତି; ଭିନ୍ନ ସର୍ଜନ-କ୍ଷେତ୍ରର କ୍ଷେତ୍ରପାଳ । "ତୁଳନାରେ ନୀଳକଣ୍ଠ ଉତ୍କଳର ଡ଼ିକ୍ଟର ଜନସନ । ଉଭୟେ ବହୁମୁଖୀ, ପ୍ରତ୍ୟୁତ୍ପନ୍ନମତି, ବେଦଜ୍ଞ ଓ ବୁଦ୍ଧି ସଂପନ୍ନ । ବିଦ୍ୟା, ବପୁ, ବାଦର—ଏପରିକି ବହୁଭୋଜିତାରେ ଉଭୟେ ଅନେକତଃ ସମାନ । ବିଶେଷ କରି ଶୃଙ୍ଖଳା, ନୀତି ନିୟମ, ଶୁଦ୍ଧି ଓ ପବିତ୍ରତା ପ୍ରତି ଦୁହିଁଙ୍କ ସମାନ ଆଦର । ଉଭୟେ କୃତି ସାହିତ୍ୟିକ ଓ ସାହିତ୍ୟର ବିଭିନ୍ନ ବିଭାଗରେ ଉଭୟେ ପାରଦର୍ଶୀ । ଉଭୟେ କାବ୍ୟ-ରାଜ୍ୟରେ ରଥୀ ନ ହେଲେ ମଧ୍ୟ ଗଦ୍ୟ ସାହିତ୍ୟରେ ଶକ୍ତିଶାଳୀ ଶୈଳୀର ପୋଷକତା କରନ୍ତି ।"[୭୨]

ଅତଏବ ନୀଳକଂଠଂକ କବି ଜୀବନ ପାଇଁ ଏହାହିଁ ସତ୍ୟ । କବିତା ପାଇଁ ସେ ଉତ୍ତର କାଳର ସ୍ରଷ୍ଟା ହୋଇପାରି ନାହାଁନ୍ତି । ସଂସ୍କୃତିର ଉପାସନା ଭିତରେ ଆପଣାକୁ ହଜେଇ ଦେଇଛନ୍ତି । ଜାତୀୟତା, ଶୁଚିବୋଧ ଓ ସଂଯମ ହୋଇଛି ତାଂକର ସାରସ୍ୱତ ଆଦର୍ଶ ।

## କବିଙ୍କର ଅନ୍ତିମ ବକ୍ତବ୍ୟ

କାବ୍ୟ ପୃଷ୍ଠାରେ କବିଙ୍କର ଅନ୍ତିମ ବକ୍ତବ୍ୟ ଉତ୍କୀର୍ଣ୍ଣ ହୋଇ ରହିଛି । ସତେ ଯେପରି ସେ ଜଣେ ଇତିହାସର ସଶସ୍ତ୍ର

୭୨ । ଶ୍ରୀ ବସନ୍ତକୁମାର ଶତପଥୀ—ପଣ୍ଡିତ ବନାମ କବିବର
ଝଂକାର, ନଭେଂବର, ୧୯୬୯ ।

ଆତ୍ମା । ଇତିହାସ ଭିତରେ ଆପଣାକୁ ଏବଂ ଆପଣା ଜାତିର ସତ୍ତାକୁ ଖୋଜି ବଂଚେଇ ନେବାର ଅଦ୍ଭୁତ ଆଗ୍ରହ ତାଙ୍କଠାରେ ବିଦ୍ୟମାନ । ଇତିହାସକୁ ନେଇ ଜାତିର ପ୍ରବହମାନତା କଳନା କରାଯାଇ ପାରେ । ଇତିହାସ ବଂଚିଥିଲେ, ଜାତି ବଂଚିଛି । ମଣିଷ ନ ଶୁଣିଲେ ବି ପୃଥିବୀ ଏହି ଇତିହାସକୁ ଶୁଣୁ ଏବଂ ଅନ୍ୟକୁ ଶୁଣାଇ ଜୀବନ ଗଢ଼ୁ; କବି ଏଇ ବର୍ତ୍ତାଦାନରେ ସତେ କି ବ୍ୟଗ୍ର ![୭୩]

ପୁଣି ଜାତୀୟ ଅଖଣ୍ଡତାର ସାର୍ବଭୌମ ସୁରକ୍ଷା ପାଇଁ କବି ମନ ବ୍ୟଗ୍ର । ଜୀବନର ଶେଷ ପ୍ରହର ପର୍ଯ୍ୟନ୍ତ ପ୍ରତ୍ୟେକ ଉତ୍କଳୀୟ, ଜାତିର ଜାଗ୍ରତ ପ୍ରହରୀ ପରି ସତର୍କ ଥାଇ ଦେଖୁ ଯେ; ଉତ୍କଳର ଶ୍ୟାମଳିମା ଖଣ୍ଡିତ ନ ହେଉ; ପୟସ୍ୱିନୀ ଗାଭୀ ହିଂଦୁ-ଭବନରେ ଆତ୍ମବଳି ନ ଦେଉ, କୁଳବାଳାର ସତୀତ୍ୱ-ଧନ ଅପହୃତ ନ ହେଉ, ନୀଳାଚଳର ରତ୍ନକେତନ ଦସ୍ୟୁ ଲୁଣ୍ଠିତ ନ ହେଉ, ଭକ୍ତର ଯଜ୍ଞ ବେଦୀ ଅପରାଜିତ ହୋଇ ରହୁ କିଂବା

---

୭୩ । ବଂଚିଥାଅ କବି ଆଉ କେତେ ଦିନ,
ଇତିହାସ ଏହି ଶରୀରେ ଧରି !
ବିଜନ ପୁଳିନେ ଗାଉଥାଅ ଗୀତ,
ତରଂଗେ ଶୁଣିବ ତଟିନୀ-ବାରି !
ଶାଳମାଳେ ଘନ ତାମସ କଂଦର;
ଶୁଭ୍ର ଜଟାଜାଳ ଶିଖର ଚୂଳ,
ଶିଶିର ଲୋତକେ ଶୁଣିବ ଲତିକା,
ଭଗ୍ନ-ଭିତ୍ତି-କଂପେ ଶୁଣିବ ଗଡ଼ !
(କୋଣାର୍କେ-ମାୟାଦେବୀ-ପ୍ରାଂତ ଭାଷଣ)

ଗଜପତି ଶିର ଅଜେୟ ଥାଇ ଏ ଜାତିର, ସାର୍ବଭୌମତ୍ୱ ପ୍ରସାର କରୁଥାଉ—ଏହାହିଁ ହେଉଛି କବିଙ୍କର ଅନ୍ତିମ ବକ୍ତବ୍ୟ ।[24]

ସୁତରାଂ କବିଙ୍କର କବିତା ଜାତିର ଆତ୍ମା ଅନ୍ୱେଷଣରେ ବ୍ରତୀ ଏବଂ ତାହାର ଚରିତାର୍ଥ୍ୟ ପାଇଁ ତାଙ୍କର କବିତା ଲେଖା ।



---

୨୪ । ଜାଳିଁଥାଉଁ କେବେ ଗ୍ରାସିବ ନାହିଁ ଛୁଂଭେ ଯବନ;
ଶ୍ୟାମଳ ଉତ୍କଳେ କରିବ ନାହିଁ ବ୍ୟସନ-ବନ;
ପୟସ୍ୱିନୀ ଗାଭୀ କାଂଦିବେ ନାହିଁ ହିଂଦୁ-ଭବନେ;
କୁଳବାଳା କେବେ ତେଜିବେ ନାହିଁ ସତୀତ୍ୱ-ଧନେ;
ନୀଳାଚନ୍ଦ୍ର ରକ୍ତ ଚରଣ ଯିବ ନାହିଁ ସାଗରେ;
ଭକ୍ତ-ଯଜ୍ଞବେଦୀ ଉତ୍କଳ ନ ହାରିବ ସମରେ;
ଗଜପତି-ଶିର ଲଳିଁବ ନାହିଁ ଭାରତ-ଖଂଡେ,
ସାମଂତ ରାଜନେ ଭୋଗିବେ ନାହିଁ ଯବନ ଦଂଡେ ।
(କୋଣାର୍କେ-ଶ୍ଳୋକ ୨୩/୨୯୩-୩୦୪ ପଂକ୍ତି)

ସମୀକ୍ଷା ସଂସଦ ସଂପାଦନାରେ

## ଆମର ଆଗାମୀ ପ୍ରକାଶନ

ଔପନ୍ୟାସିକ ଗୋପୀନାଥ
କଵି ଅଭିମନ୍ୟୁ



ଏଇ ଲେଖକଙ୍କର ଅନ୍ୟାନ୍ୟ

## ସମୀକ୍ଷାମୂଳକ ଗ୍ରଂଥ

ସାହିତ୍ୟର ସାମାନ୍ୟ କଥନ
ସାହିତ୍ୟକ ବୀକ୍ଷା ଓ ପରୀକ୍ଷା
ଅଲଂକାର ଓ ଅଲଂକାରତତ୍ତ୍ୱ